



# ଜପୁଜୀ ସାହିବ ଜୀ

## Japujee sahib jee

ଶିଖ୍ ଧର୍ମର ଆଦି ଗୁରୁ ଶ୍ରୀ ଗୁରୁ ନାନକ ଦେବଜୀଙ୍କ

ରଚିତ ବାଣୀର

## ଓଡ଼ିଆ ଅନୁବାଦ

ੴ

# ଶିଖ୍ ଧର୍ମର ଆଦି ଗୁରୁ
# ଶ୍ରୀ ଗୁରୁ ନାନକ୍ ଦେବ୍‌ଜୀ କୃତ

# ଜପୁଜୀ ସାହିବ୍ ଜୀ

**ਆਦਿ ਗੁਰੂ ਸ੍ਰੀ ਗੁਰੂ ਨਾਨਕ ਦੇਵ ਜੀ**

ਜਪੁਜੀ ਸਾਹਿਬ ਜੀ

( ਉੜੀਆ ਕਵਿਤਾ ਟੀਕਾ )

**ਸ੍ਰ: ਕ੍ਰਿਪਾਲ ਸਿੰਘ 'ਡਾਕੀਆ'**

----: କବିତାରେ ଓଡ଼ିଆ ଅନୁବାଦ ବାଣୀ ସହିତ :----

ସର୍‌ଦାର୍ କିର୍‌ପାଲ୍ ସିଂଘ 'ଡାକୀଆ'
ଉର୍ଫ ହରିହର ଡାକୁଆ
ପୁରୁଣାପଡ଼ା, ଭବାନୀପାଟଣା-- ୭୬୬୦୦୧

ਬਾਣੀ ਪੁਸਤਕ ਦਾ ਨਾਮ:-- ਜਪੁਜੀ ਸਾਹਿਬ ਜੀ

ୱାଣୀ ପୁସ୍ତକର ନାମ : – ଜପୁଜୀ ସାହିବ୍ ଜୀ

ਅਨੁਵਾਦਕ : - ਸਰਦਾਰ  ਕਿਰਪਾਲ ਸਿੰਘ 'ਡਾਕੀਆ'

ਮੋਬਾਇਲ- ੯੪੩੭੨੨੪੯੫੮ ,੮੯੧੭੪ ੦੮੫੫੧

ਪੁਰੁਣਾਪੜਾ, ਭਵਾਨੀਪਟਣਾ-੭੬੬੦੦੧

ଅନୁବାଦକ : – ସର୍ଦାର୍  କିର୍ପାଲ୍ ସିଂଘ 'ଡାକୀଆ'

ମୋବାଇଲ– ୯୪୩୭୨୨୪୯୫୮, ୮୯୧୭୪ ୦୮୫୫୧

ପୁରୁଣାପଡ଼ା, ଭବାନୀପାଟଣା–୭୬୬୦୦୧

ਪ੍ਰਕਾਸ਼ਨ ਸਾਲ :-        ੦੫-੦੧-੨੦੧੯

(ਦਸ਼ਮ ਗੁਰੂ ਸ਼੍ਰੀ ਗੁਰੂ ਗੋਬਿੰਦ ਸਿੰਘ ਜੀ ਦਾ ਜਨਮ-ਦਿਹਾੜਾ)

ପ୍ରକାଶନ ବର୍ଷ :–        ୦୫–୦୧–୨୦୧୯

(ଦଶମ ଗୁରୁ ଶ୍ରୀ ଗୁରୁ ଗୋବିଂଦ ସିଂଘ୍ ଜୀଙ୍କର ଜନ୍ମ–ଦିବସ )

ਸਥਾਨ :-      ਭਵਾਨੀਪਟਣਾ

ସ୍ଥାନ :–      ଭବାନୀପାଟଣା

ਮੁਦ੍ਰਕ :-  ਸਰਦਾਰ ਸੁਰਿੰਦਰਜੀਤ ਸਿੰਘ ਭੰਬਰਾ - ਸਿੰਘ ਕੰਪਯੂਟਰਸ ,

ਭਵਾਨੀਪਟਣਾ - ਕਾਲਾਹਾਂਡੀ - ਉੜੀਸਾ ੭੬੬੦੦੧

ਮੋਬਾਈਲ- ੯੪੩੭੦੭੦੨੩੫

ମୁଦ୍ରକ :–  ସର୍ଦାର୍ ସୁରିଂଦରଜୀତ୍ ସିଂଘ୍ ଭଂବରା – ସିଂଘ୍ କମ୍ପ୍ୟୁଟରସ୍ ,

ଭବାନୀପାଟଣା – କଳାହାଣ୍ଡି – ଓଡ଼ିଶା ୭୬୬୦୦୧

ମୋବାଇଲ – ୯୪୩୭୦୭୦୨୩୫

# ੴ

**ੴ ਸਤਿਨਾਮੁ ਕਰਤਾ ਪੁਰਖੁ ਨਿਰਭਉ**

**ਨਿਰਵੈਰੁ ਅਕਾਲ ਮੂਰਤਿ ਅਜੂਨੀ ਸੈਭੰ ਗੁਰ ਪ੍ਰਸਾਦਿ ॥**

( ਮੂਲ-ਮੰਤ੍ਰ , ਜਪੁਜੀ ਸਾਹਿਬ )

'ੴ' ୧ଓଂକାର ସତିନାମୁ କରତା ପୁରଖୁ ନିରଭଉ
ନିରୱୈରୁ ଅକାଲ ମୂରତି ଅଜୂନୀ ସୈଭଂ ଗୁର ପ୍ରସାଦି ।।
(ଉଚ୍ଚାରଣ-- ଇକ୍ ଓଂକାର୍ , ସତ୍‌ନାମ୍ , କର୍ତ୍ତା ପୁରୁଖ୍ , ନିରଭଉ ,
ନିରୱୈର୍ , ଅକାଲ୍ ମୂରତ୍ , ଅଜୁନୀ, ସୈଭଂ, ଗୁର୍‌ପ୍ରସାଦ୍ )

ଅର୍ଥ --ସେହି ପରମ ତତ୍ତ୍ୱ , ଯାହାର ବାଚକ ଓଂ, ସେ କେବଳ ଏକ , ଅକାଧିକ ନୁହଂତି । ସେ ସତ୍ୟ ଅର୍ଥାତ୍ ଚିରସ୍ଥିତ । ସେ ସୃଷ୍ଟିର ଜନକ ଓ ତହିଁରେ ପରିବ୍ୟାପ୍ତ । ସେ ଭୟହୀନ । ତାଙ୍କର କାହାରି ସହିତ ହେଲେ ଶତୃତା ନାହିଁ । ତାଙ୍କର ଅସ୍ତିତ୍ୱ କାଳ ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ । ତାଙ୍କର ଜନ୍ମ ନାହିଁ , କାରଣ ସେ ସ୍ୱତ: -ପ୍ରକାଶିତ । ସେ କେବଳ ଗୁରୁ-କୃପା ଦେଇ ହିଁ ଉପଲବ୍ଧ ହେଇଥାନ୍ତି ।

( ମୂଳ-ମନ୍ତ୍ର , ଜପୁଜୀ ସାହିବ )

## ----- ::::: ଗୁରୁ ନାନକ୍‌ଦେବ୍ ଜୀ :::::-----

ଶିଖ୍ ଅର୍ଥ ଶିଷ୍ୟ । ଶିଖ୍ ଧର୍ମ ଅର୍ଥାତ ଶିଷ୍ୟଧର୍ମ । ପଞ୍ଜାବ ଅଞ୍ଚଳରେ 'ଷ'ର ବ୍ୟବହାର ନାହିଁ , ଏଣୁ ପୁରୁଷକୁ ପୁର୍‌ଖ , ଶିଷ୍ୟକୁ ଶିଖ୍ , ସନ୍ତୋଷ କୁ ସନ୍ତୋଖ ଉଚ୍ଚାରଣ କରାଯାଏ । ମନେ ରଖିବାକୁ ହେବ 'ଶିଖ' ଶବ୍ଦ ସଂସ୍କୃତ ଭାଷାର 'ଶିଷ୍ୟ' ରୁ ଉତ୍ପନ୍ନ ହୋଇଛି ଯାହାର ଅର୍ଥ ଶିଖିବା ଲୋକ , ସତ୍ୟକୁ ଜାଣିବାକୁ ଆଗ୍ରହ ପ୍ରକାଶ କରୁଥିବା ଲୋକ , ଓ 'ସତ୍ୟ' ହେଉଛି ପରମପିତା ପରଂବ୍ରହ୍ମ ପରମେଶ୍ୱର ଯାହାଙ୍କୁ ଶିଖ୍‌ଧର୍ମରେ 'ୱାହିଗୁରୁ' କୁହାଯାଏ , ୱାହିଗୁରୁ ଅର୍ଥାତ 'ଧନ୍ୟଗୁରୁ' । ଶିଖ୍-ମାନେ ପରମେଶ୍ୱରଙ୍କୁ 'ୱାହିଗୁରୁ' ବା ଧନ୍ୟଗୁରୁ ନାମରେ ସମ୍ବୋଧନ କରନ୍ତି ।

'ଶିଖ୍‌ଧର୍ମ ' ଇସ୍ଲାମ୍ ଧର୍ମ , ହିନ୍ଦୁ ଧର୍ମ , ଖ୍ରୀଷ୍ଟ ଧର୍ମ , ଇହୁଦୀ ଧର୍ମ , ବୌଦ୍ଧ ଧର୍ମ ଅପେକ୍ଷା ନବୀନତମ ଧର୍ମ । ଏହା ଗୋଟିଏ ଏକେଶ୍ୱରବାଦୀ ଧର୍ମ ଯାହା କେବଳ ଏକ ପରମେଶ୍ୱର ପରମାତ୍ମାଙ୍କର ବିଶ୍ୱାସ ଉପରେ ପ୍ରତିଷ୍ଠିତ ।

ଗୁରୁ ନାନକ୍‌ଦେବ୍‌ଜୀ ହେଉଛନ୍ତି ଶିଖ୍‌ଧର୍ମର ସଂସ୍ଥାପକ , ସେ ଏକ ଭଗବାନଙ୍କୁ ବିଶ୍ୱାସ କରିବାକୁ ଶିକ୍ଷା ଦେଇଛନ୍ତି , ପୁରୁଷ ଓ ସ୍ତ୍ରୀଙ୍କୁ ସମାଜରେ ସମାନ ଅଧିକାର ଦେଇଛନ୍ତି । ଜାତିଭେଦ ପ୍ରଥାକୁ ଭାଙ୍ଗି ସମାଜରେ ସମାନତା ପ୍ରତିଷ୍ଠା କରିଛନ୍ତି । ଶିଷ୍ୟ ମାନଙ୍କୁ ୧- ପରମେଶ୍ୱରଙ୍କ ନାମ ସର୍ବଦା ଜପ କରିବା , ୨- ସତ୍‌କର୍ମ କରିବା , ୩- ବାଣ୍ଟିଖାଇବାକୁ ଉପଦେଶ ଦେଇଛନ୍ତି । ଶିଖ୍ ମାନଙ୍କ ପାଇଁ କୌଣସି ଛବି , ମୂର୍ତ୍ତି ଆଗରେ ନତମସ୍ତକ ହେବାକୁ ସେ ବାରଣ କରିଛନ୍ତି । "ବାଣୀ ଗୁରୁ , ଗୁରୁ ହୈ ବାଣୀ" ଏଣୁ ଶିଖ୍ ମାନେ ୱାହିଗୁରୁଙ୍କୁ ସମ୍ମାନ ଜଣାଇବା ପାଇଁ ଗୁରୁବାଣୀ ଉଦ୍ଦେଶ୍ୟରେ ନତମସ୍ତକ ହେବେ ।

ଗୁରୁ ନାନକ୍‌ଦେବ୍‌ଜୀ ୧୫ ଅପ୍ରେଲ୍ ୧୪୬୯ ଶନିବାର ଦିନ ରାଇଭୋଏ ତଲୱଣ୍ଡୀ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଏହି ଗ୍ରାମଟି ବର୍ତ୍ତମାନ

ପାକିସ୍ଥାନର ଶେଖୁପୁରା ଜିଲ୍ଲାରେ ରହିଛି , ଯାହାର ବର୍ତ୍ତମାନ ନାମ 'ଶ୍ରୀ ନନ୍‌କାଣା ସାହିବ ଜୀ' ଅଟେ । ତାଙ୍କର ପିତାଙ୍କ ନାମ 'ମେହେତା କଲ୍ୟାଣ୍ ଦାସ୍ ' ( ମେହେତା କାଲୁ ) ଓ ମାତାଙ୍କ ନାମ 'ତୃପ୍ତା' ଥିଲା ।

୧୮ ବର୍ଷ ବୟସରେ ନାନକ୍‌ଜୀ ବଟାଲାନିବାସୀ ଶ୍ରୀ ମୂଲ୍ ଚନ୍ଦଙ୍କ ସୁକନ୍ୟା ' ସୁଲକ୍ଷଣୀ' ଙ୍କ ସହିତ ବିବାହ କରିଥିଲେ । ତାଙ୍କର ଗର୍ଭରୁ ଦୁଇ ପୁତ୍ର ବାବା ଶ୍ରୀଚନ୍ଦ୍ ଓ ବାବା ଲକ୍ଷମୀ ଚନ୍ଦ୍ର ଜନ୍ମ ଗ୍ରହଣ କରିଥିଲେ ।

୩୮ ବର୍ଷ ବୟସରେ ରବାବ୍ ବାଦକ 'ଭାଇ ମରଦାନା' ଙ୍କୁ ସାଙ୍ଗରେ ନେଇ ଗୁରୁ ନାନକ୍‌ଦେବ୍‌ଜୀ ଚାରିଟି 'ଉଦାସୀ' ବା ଧର୍ମାର୍ଥ ପରିବ୍ରଜ୍ୟାରେ ଭାରତର ଚାରିଦିଗ ଓ ତିବ୍ବତ , କାବୁଲ , କାନ୍ଦାହାର୍ , ଇରାକ୍ , ଇରାନ୍ , ବଗ୍‌ଦାଦ୍ , ସିଂହଳ ଦ୍ୱୀପ , ଚୀନ ଆଦି ଦେଶ ପରିଭ୍ରମଣ କରି ଶିଖ୍‌ଧର୍ମର ପ୍ରଚାର ପ୍ରସାର କରିଛନ୍ତି ।

ଶିଖ୍ ଧର୍ମର ମୂଳମନ୍ତ୍ର ଓ ବାଣୀ 'ଜପୁଜୀ ସାହିବ ଜୀ' ଗୁରୁ ନାନକ୍‌ଦେବ୍‌ଜୀଙ୍କ ପ୍ରଧାନ ରଚନା , ଏଥିରେ ପରମପିତା ପରମେଶ୍ୱର ପରଂବ୍ରହ୍ମଙ୍କ ସ୍ୱରୁପ ଓ ତାଙ୍କୁ ଲାଭ କରିବା (ପାଇବାର) ମାର୍ଗ ବର୍ଣ୍ଣିତ ହୋଇଛି ।

-----((((()))))-----

--- : ଅନୁବାଦକଙ୍କ ଦିପଦ :---

ପ୍ରିୟ ପାଠକ ବନ୍ଧୁ,

ୱାହିଗୁରୁ ଜୀ କା ଖାଲ୍‌ସା , ୱାହିଗୁରୁ ଜୀ କୀ ଫତେହ୍ ।

ଦାସ ସର୍‌ଦାର୍ କିର୍‌ପାଲ୍ ସିଂଘ୍ 'ଡାକୀଆ' ଉର୍ଫ ହରିହର 'ଡାକୁଆ' ଜଣେ ଓଡ଼ିଆ ଶିଖ୍ । ଓଡ଼ିଆ ଭାଷାଭାଷୀ ଭାଇ ଭଉଣୀଙ୍କ ପାଇଁ ଶିଖ୍ ଧର୍ମର ଧର୍ମଗ୍ରନ୍ଥ ଆଦି ଶ୍ରୀ ଗୁରୁ ଗ୍ରନ୍ଥ ସାହିବ ଜୀର ୧)- ଜପୁଜୀ ସାହିବ ଜୀ , ୨)-ଆନନ୍ଦ ସାହିବ ଜୀ , ୩)- ସୁଖମନୀ ସାହିବ ଜୀ , ଓ ୪)- ସଲୋକ ମହଲା ନୌୱାଁକୁ ଓଡ଼ିଆ ଭାଷାରେ ଦାସ ଅନୁବାଦ କରିଛି । ଏଥି ନିମନ୍ତେ ପରମପିତା ପରମେଶ୍ୱର ୱାହିଗୁରୁ ଦାସ ଉପରେ ଅସୀମ କୃପା ବର୍ଷଣ କରିଥିବା ଦାସ ଅନୁଭବ କରିଛି ।

ଶ୍ରୀ ଗୁରୁ ଗ୍ରନ୍ଥ ସାହିବ ଜୀ ଗୁରୁମୁଖୀ ଲିପିରେ ଲିଖିତ । ଏହି ଗ୍ରନ୍ଥରେ ୬ ଜଣ ଶିଖ୍ ଗୁରୁ , ବିଭିନ୍ନ ପ୍ରାନ୍ତର ୧୫ ଜଣ ଭକ୍ତ, ୧୧ ଜଣ ଭାଟ୍ ଓ ୪ ଜଣ ଶିଷ୍ୟଙ୍କର ବାଣୀ ବିଭିନ୍ନ ଭାଷା ଓ ବିଭିନ୍ନ ରାଗ ରାଗିଣୀରେ ଲିପିବଦ୍ଧ ହୋଇଛି ।

**୧)**-- ୬ ଜଣ ଗୁରୁ- ଶ୍ରୀ ଗୁରୁ ନାନକ୍ ଦେଉ୍ ଜୀ, ଶ୍ରୀ ଗୁରୁ ଅମରଦାସ୍ ଜୀ , ଶ୍ରୀ ଗୁରୁ ରାମ୍‌ଦାସ୍ ଜୀ , ଶ୍ରୀ ଗୁରୁ ଅରଜୁନ୍ ଦେଉ୍ ଜୀ , ଶ୍ରୀ ଗୁରୁ ତେଗ୍ ବାହାଦୁର୍ ଜୀ ।

**୨)**-- ୧୫ ଜଣ ଭକ୍ତ- କବୀର୍ ଜୀ, ନାମ୍‌ଦେଉ୍ ଜୀ , ରୱିଦାସ୍ ଜୀ , ତ୍ରିଲୋଚନ୍ ଜୀ , ଫରୀଦ୍ ଜୀ , ବୈଣୀ ଜୀ , ଧନ୍ନା ଜୀ , ଜୈଦେଉ୍ ଜୀ , ଭୀଖଣ୍ ଜୀ , ସୁର୍‌ଦାସ୍ ଜୀ , ପରମାନନ୍ଦ୍ ଜୀ , ସୈଣ୍ ଜୀ , ପୀପା ଜୀ , ସଧନା ଜୀ , ରାମାନନ୍ଦ୍ ଜୀ ଆଦି ବିଭିନ୍ନ ପ୍ରାନ୍ତର ଭକ୍ତ ମାନଙ୍କର ବାଣୀ ଶାମିଲ କରା ଯାଇଛି ।

**୩)**-- ୧୧ ଜଣ ଭାଟ୍ - କଲ୍ଲସହାର୍ , ଜାଲପ୍ ,କୀରତ୍ , ଭିକ୍‌ଖା , ସଲ୍‌ହ , ଭଲ୍‌ହ , ନଲ୍‌ହ , ବଲ୍‌ହ , ମଥୁରା , ଗୟନ୍ଦ୍ , ହରିବଂସ୍ ।

**୪)** -- ୪ ଜଣ ଶିଷ୍ୟ - ଭାଇ ମରଦାନା ଜୀ , ବାବା ସୁନ୍ଦର୍ ଜୀ , ଭାଇ

ସତ୍ତା ଜୀ ଓ ଭାଇ ବଲୱଂଡ ଜୀ ।

୫)-- ରାଗ -- ୩୧ ରାଗ , ରାଗିଣୀ

୬)-- ଭାଷା-- **ବହୁ ଭାଷା , ପୂରା ବିଶ୍ୱରେ ଏ ଗୋଟିଏ ଗ୍ରନ୍ଥ ଯେଉଁଟା କି ଏତିକି ଭାଷାରେ ରଚିତ ହୋଇଅଛି** । ଅରବୀ , ଫାରସୀ , ଉର୍ଦ୍ଦୁ , ସିନ୍ଧୀ , ସଂସ୍କୃତ ( ତତ୍ସମ ଓ ତଦ୍ଭବ) , ସାଧୁକ୍କଡ଼ୀ (ବ୍ରଜ ଭାଷା ) , ଗୁଜରାତୀ , ରାଜସ୍ଥାନୀ , ମରାଠୀ , ଓଡ଼ିଆ , ବଂଗାଲୀ , ଅୱଧୀ , ଆଓରି ଅନେକ କେତୋଟି ଭାଷା ଯାହା ମୁଁ କହି ପାରୁ ନାହିଁ । ଗୁରୁ ନାନକ୍ ଦେୱ୍ ଜୀ ଯେଉଁ ଯେଉଁ ପ୍ରାନ୍ତକୁ ଭ୍ରମଣ କରିଛନ୍ତି , ସେ ପ୍ରାନ୍ତର ଭାଷା ମଧ୍ୟ ମିଶାଇ ଲେଖିଛନ୍ତି । ଏତିକି ଭାଷାରେ ଲିଖିତ ଗ୍ରନ୍ଥର ଅନୁବାଦ କରିବାଟା ସହଜ ନୁହେଁ । ଏତେ ଗୁଡ଼ିଏ ଭାଷାରେ ରଚିତ ବାଣୀ ଓ ଭାବର ଉଚିତ ନିର୍ବହନ ପୂର୍ବକ ଅନୁବାଦ କାର୍ଯ୍ୟ ସରଳ ନ ଥିଲା । ଦଶମ-ଗୁରୁ ଶ୍ରୀ ଗୁରୁ ଗୋବିନ୍ଦ୍ ସିଂଘ୍ ଜୀ "ଖାଲ୍ସା ପନ୍ଥ"ର ସୃଜନ ସମୟରେ ଶିଖ୍ ମାନଙ୍କର ପରୀକ୍ଷା ନେଇ ଯେଉଁ ପାଞ୍ଚ ଜଣ (ଭାଇ ଦୟା ସିଂଘ୍ ଜୀ , ଭାଇ ଧରମ୍ ସିଂଘ୍ ଜୀ , ଭାଇ ହିମ୍ମତ ସିଂଘ୍ ଜୀ , ଭାଇ ମୁହକମ୍ ସିଂଘ୍ ଜୀ , ଭାଇ ସାହିବ୍ ସିଂଘ୍ ଜୀ) ଙ୍କୁ ପଞ୍ଚ ପ୍ୟାରେ ପଦବୀ ପ୍ରଦାନ କରି ଥିଲେ , ସେମାନଙ୍କର ମଧ୍ୟରୁ ଜଣେ ଭାଗ୍ୟବାନ ଥିଲେ ଓଡ଼ିଆ ଯୁବକ , ପୁରୀ ନିବାସୀ " ହିମ୍ମତ୍ ରାୟ " । ଅମୃତ-ପାନ କଲା ପରେ ତାଙ୍କର ନାମ " ହିମ୍ମତ୍ ସିଂଘ୍ " କରା ଗଲା । ଏହାକୁ ଦୃଷ୍ଟିରେ ରଖି କେହିହେଲେ ଜଣେ ଉତ୍କଳୀୟ ଶିଖ୍ ଶିଖ୍ଧର୍ମର ପ୍ରଚାର ପ୍ରସାର ନିମନ୍ତେ ଚେଷ୍ଟିତ ହୋଇ ଥାଆନ୍ତା । ତେଣୁ ଏହି ଦାସ ଦ୍ୱାରା କରା ଯାଇଥିବା କିଞ୍ଚିତ ପ୍ରଚେଷ୍ଟା ବୃଥା ହେବ ନାହିଁ । ଏହି କାର୍ଯ୍ୟ ଆହୁରି ଆଗକୁ ବଢ଼ିବ , ଦାସ ଏହି ଆଶା ରଖିଚି ।

ମୂଳବାଣୀକୁ ସର୍ଦାର୍ ସୁରିଂଦରଜୀତ୍ ସିଂଘ୍ 'ଭଂବରା' ମୂଳ ଗୁରମୁଖୀରୁ ଓଡ଼ିଆ ଲିପିକୁ ଲିପ୍ୟନ୍ତର କରିଛନ୍ତି । ଯେଉଁ ମାନେ ନିୟମିତ ମୂଳବାଣୀକୁ ପାଠ କରିବାକୁ ଚାହାନ୍ତି ସେମାନେ କିଞ୍ଚିତ ସାବଧାନତା ଅବଲମ୍ବନ କରିବାକୁ ଅନୁରୋଧ ।

ଗୁରମୁଖୀ ଲିପି ଦୃଷ୍ଟିରୁ ----

ଅ , ଆ, ଇ , ଈ , ଉ , ଊ , ଏ , ଐ , ଓ , ଔ - ଏ ଗୁଡ଼ିକ ସ୍ୱର ବର୍ଣ୍ଣ , ଅନ୍ୟ ଅକ୍ଷର ଗୁଡ଼ିକ ବ୍ୟଞ୍ଜନ ବର୍ଣ୍ଣ । ଯଥା :-

କ ଖ ଗ ଘ ଙ

ଚ ଛ ଜ ଝ ଞ

ଟ ଠ ଡ ଢ ଣ

ତ ଥ ଦ ଧ ନ

ପ ଫ ବ ଭ ମ -- ଏ ଗୁଡ଼ିକ ବର୍ଗ୍ୟ ବ୍ୟଞ୍ଜନ ବର୍ଣ୍ଣ ।

ୟ ର ଲ ୱ ଡ଼ --ଏ ଗୁଡ଼ିକ ଅବର୍ଗ୍ୟ ବ୍ୟଞ୍ଜନ ବର୍ଣ୍ଣ ।

ସ୍ୱର ବର୍ଣ୍ଣ ଗୁଡ଼ିକ ମଧ୍ୟରୁ ଅ, (ହ୍ରସ୍ୱ) ଇ , ଓ (ହ୍ରସ୍ୱ) ଉ ଲଘୁ ସ୍ୱର ବର୍ଣ୍ଣ ।

ଏ ଗୁଡ଼ିକର ଉଚ୍ଚାରଣ ଲଘୁଭାବରେ ଉଚ୍ଚାରିତ ହୁଏ । ସମସ୍ତ ସ୍ୱରବର୍ଣ୍ଣକୁ ଲଗା, ମାତ୍ରା ଭାବରେ , ବ୍ୟଞ୍ଜନ ବର୍ଣ୍ଣ ଗୁଡ଼ିକରେ ଲଗା ଯାଇ ବ୍ୟବହାର କରାଯାଏ ଓ ଉଚ୍ଚାରଣ କରାଯାଏ । ହ୍ରସ୍ୱ ସ୍ୱର ବର୍ଣ୍ଣ ଲାଗିଥିବା ବ୍ୟଞ୍ଜନ ବର୍ଣ୍ଣ ଗୁଡ଼ିକ ସମୟ ଦୃଷ୍ଟିରୁ କମ ସମୟ ପାଇଁ ବା ଲଘୁ ଉଚ୍ଚାରଣ ଓ ଦୀର୍ଘ ସ୍ୱର ଲଗାମାତ୍ରା ଲାଗିଥିବା ବ୍ୟଞ୍ଜନ ବର୍ଣ୍ଣ ଗୁଡ଼ିକ ସମୟ ଦୃଷ୍ଟିରୁ ଦୀର୍ଘ ସମୟ ପାଇଁ ବା ଦୀର୍ଘ ଉଚ୍ଚାରଣ କରାଯାଏ ।

**୧)**-- ମୂଳପାଠ ଗୁଡ଼ିକୁ ଉଚ୍ଚାରଣ କଲାବେଳେ ଶବ୍ଦର ଶେଷ ବ୍ୟଞ୍ଜନ ଅକ୍ଷର ଯଦି ଅକାରାନ୍ତ ହୋଇଥାଏ ତେବେ ତାହା ହସନ୍ତଯୁକ୍ତ କରି ଉଚ୍ଚାରଣ କରିବେ ।

ଯଥା : --- ଶବ୍ଦ ଉଚ୍ଚାରଣ

ନାନକ --- କ ----କ୍ ( ନାନକ୍ )

ଲଖ --- ଖ ----ଖ୍ ( ଲଖ୍ )

ଚୁପ --- ପ ---- ପ୍ (ଚୁପ୍ )

ତାର --- ର ---- ର୍ (ତାର୍ )

**୨)**-- ଶବ୍ଦର ଶେଷ ବ୍ୟଞ୍ଜନ ଅକ୍ଷରରେ ଯଦି ହ୍ରସ୍ୱ ଇ କାର ଲାଗିଥାଏ ତେବେ (ହ୍ରସ୍ୱ) ଇକାରକୁ ବାଦ୍ ଦେଇ ହସନ୍ତ ଲଗାଇ ଉଚ୍ଚାରଣ କରିବେ ।

ଯଥା --- ଶବ୍ଦ ଉଚ୍ଚାରଣ

ମୂରତି --- ତି ---- ତ୍ ( ମୂରତ୍ )

ପ୍ରସାଦି --- ଦି ---- ଦ୍ ( ପ୍ରସାଦ୍ )

ସୋଚି --- ଚି ---- ଚ୍ ( ସୋଚ୍ )

ନାଲି --- ଲି ---- ଲ୍ ( ନାଲ୍ )

ଘସି --- ସି ---- ସ୍ ( ଘସ୍ )

ହରି --- ରି ---- ର୍ ( ହର୍ )

ହୁକମି --- ମି ---- ମ୍ ( ହୁକମ୍ )

**୩)**--- ଶବ୍ଦର ଶେଷରେ ବ୍ୟଞ୍ଜନ ବର୍ଣ୍ଣ ଥିଲେ ଓ ସେଥିରେ ହ୍ରସ୍ୱ ଉ କାର ମାତ୍ରା ଲାଗିଥିଲେ , ହ୍ରସ୍ୱ ଉକାରକୁ ଛାଡ଼ି ଦେଇ ସେଥିରେ ହସନ୍ତ ଲଗାଇ ପାଠ କରିବେ ।

ଯଥା --- ଶବ୍ଦ ଉଚ୍ଚାରଣ

ମୋହୁ --- ହୁ ----ହ୍ ( ମୋହ୍ )

ସଚୁ --- ଚୁ ----ଚ୍ ( ସଚ୍ )

ହୁକମୁ --- ମୁ ---- ମ୍ ( ହୁକମ୍ )

ମସୁ --- ସୁ ---- ସ୍ ( ମସ୍ )

କାଗଦୁ --- ଦୁ ---- ଦ୍ ( କାଗଦ୍ )

ସାରୁ --- ରୁ ---- ର୍ ( ସାର୍ )

ଏହୁ --- ହୁ ---- ହ୍ ( ଏହ୍ )

**୪)**--- ଶେଷ ବର୍ଣ୍ଣଟି ହ୍ରସ୍ୱ 'ଇ' ହୋଇଥିଲେ 'ଇ' ବଦଳରେ ଲଘୁ 'ଏ' ଉଚ୍ଚାରଣ କରନ୍ତୁ ।

ଯଥା --- ଶବ୍ଦ ଉଚ୍ଚାରଣ

କୋଇ --- ଇ --- ଏ ( କୋଏ )

ନାଇ --- ଇ ---- ଏ ( ନାଏ )

**୫)**--- ଶେଷ ବର୍ଣ୍ଣଟି ହ୍ରସ୍ୱ 'ଉ' ହୋଇଥିଲେ 'ଉ' ବଦଲରେ 'ଓ' ଉଚ୍ଚାରଣ କରନ୍ତୁ ।

ଯଥା --- ଶବ୍ଦ ଉଚ୍ଚାରଣ

ନାଉ --- ଉ ---- ଓ ( ନାଓ )

ଭାଉ --- ଉ ---- ଓ ( ଭାଓ )

ଦରିଆଉ --- ଉ ---- ଓ ( ଦରିଆଓ )

ତାଉ --- ଉ ---- ଓ ( ତାଓ )

ମୂଳପାଠକୁ କିଛି ଦିନ ଏ ଭଳି ପଢ଼ିବାକୁ ଚେଷ୍ଟା କରନ୍ତୁ ଅଥବା କୌଣସି ଜ୍ଞାନୀ କିମ୍ବା ପାଠୀଙ୍କ ଠାରୁ ଉପଦେଶ ପ୍ରାପ୍ତ କରନ୍ତୁ । ଆପଣଙ୍କ ମୂଳପାଠ ଉଚ୍ଚାରଣ ଶୁଦ୍ଧ ହୋଇ ଯିବ ।

ମୂଳବାଣୀକୁ ଓଡ଼ିଆ ଭାଷାରେ ଅନୁବାଦ କଲା ବେଳେ ସ୍ୱର୍ଗତ ସର୍‌ଦାର୍ ଦରସନ୍ ସିଂଘ୍ ୱିର୍କ ଜୀ, ସ୍ୱର୍ଗତ ସର୍‌ଦାର୍ ଉଜାଗର୍ ସିଂଘ୍ ସଂଧୁ ଜୀ , ସ୍ୱର୍ଗତ ସର୍‌ଦାର୍ କର୍‌ତାର୍ ସିଂଘ୍ ସଂଧୁ ଜୀ, ସ୍ୱର୍ଗତ ସର୍‌ଦାର୍ ତାରା ସିଂଘ୍ ଭମ୍ବରା ଜୀ (ପ୍ରଧାନ- ଗୁରୁଦୁଆରା ) ବିଭିନ୍ନ ପ୍ରକାର ସାହାଯ୍ୟ ଦେଇ ଦାସକୁ ଉତ୍ସାହିତ କରିଥିବାରୁ ଦାସ ଚିରୋପକୃତ ରହିଛି ଓ ରହିବ । ସ୍ୱର୍ଗତ ସର୍‌ଦାର୍ ତରଲୋକ ସିଂଘ ସଗ୍‌ଗୁ ଜୀ ଯେଉଁ ସାହାଯ୍ୟ , ସହାନୁଭୂତି ଓ ଉତ୍ସାହ ପ୍ରଦାନ କରିଥିଲେ ତାହା କଦାପି ଭୁଲିବାର ନୁହେ ।

ପୁସ୍ତକ ଗୁଡ଼ିକର ପ୍ରକାଶନ ଅବସରରେ ଦାସ ସମସ୍ତଙ୍କୁ ସ୍ମରଣ କରୁଛି । ପରମପିତା ପରମେଶ୍ୱର ୱାହିଗୁରୁ ଦିବଂଗତ ମହାପୁରୁଷ ମାନଙ୍କ ଆତ୍ମାକୁ ଆପଣା ଚରଣ ତଳେ ଶରଣ ପ୍ରଦାନ କରିବାକୁ ନତମସ୍ତକ ହୋଇ ଅର୍‌ଦାସ୍ କରୁଛି ।

ଯେଉଁ ବନ୍ଧୁମାନେ ପ୍ରକାଶନର ଦାୟିତ୍ୱ ନେଇଛନ୍ତି ସେମାନଙ୍କୁ ଦାସ

କୃତଜ୍ଞତା ପ୍ରକାଶ କରୁଛି , ୱାହିଗୁରୁ ତାଙ୍କୁ ଜାଗତିକ ଓ ଆତ୍ମିକ ଆନନ୍ଦ ପ୍ରଦାନ କରନ୍ତୁ ।

ଭୁବନ୍‌ବାଣୀ ଟ୍ରସ୍‌ଟ୍ , ଲଖନୌ ଦ୍ୱାରା ପ୍ରକାଶିତ "**ଆଦି ଶ୍ରୀ ଗୁରୁ ଗ୍ରନ୍ଥ ସାହିବ ଜୀ**"ର ହିଂଦୀ ଅନୁବାଦର ସାହାଯ୍ୟ ବିନା ଏହି ଓଡ଼ିଆ ଅନୁବାଦ ସମ୍ଭବ ନଥିଲା ଏଣୁ ଏହାର ହିଂଦୀ ଅନୁବାଦକ ଡା: ମନ୍‌ମୋହନ୍ ସହଗଲ୍‌ଙ୍କ ନିକଟରେ ଏହି ଦାସ ଋଣୀ ରହିଲା ।

ଓଡ଼ିଆ ଭାଷା ଓ ଲିପିରେ ଅନୁବାଦ ଓ ଲିପ୍ୟନ୍ତରଣ କରି ଲେଖିବା ଅବସରରେ ଅନେକ ତୃଟି , ଭୁଲ୍‌ଭଟକା କରି ଥିବି , ଯୋଡ଼-ହସ୍ତରେ କ୍ଷମା ମାଗୁଛି । ଭୁଲ୍ ତୃଟି ଜଣାଇ ଦେଇ କୃତଜ୍ଞ କରିବା ହେବେ ।

ଏକ ତୁଛ୍-ସେବକ -- ସର୍‌ଦାର୍ କିର୍‌ପାଲ୍ ସିଂଘ୍ 'ଡାକୀଆ' ,
ଉର୍ଫ ହରିହର ଡାକୁଆ ,
ଭବାନୀପାଟଣା-୭୬୬୦୦୧
୦୫ /୦୧/୨୦୧୮ ,
(ଦଶମ-ଗୁରୁ ଶ୍ରୀ ଗୁରୁ ଗୋବିଂଦ୍ ସିଂଘ୍ ଜୀଙ୍କ ଜନ୍ମ-ଦିୱସ)

-----((((()))))-----

# ੴ

## ਜਪੁਜੀ ਸਾਹਿਬ ਜੀ

## ଜପୁଜୀ ସାହିବ ଜୀ

ੴ ਸਤਿਨਾਮੁ ਕਰਤਾ ਪੁਰਖੁ ਨਿਰਭਉ
ਨਿਰਵੈਰੁ ਅਕਾਲ ਮੂਰਤਿ ਅਜੂਨੀ ਸੈਭੰ ਗੁਰ ਪ੍ਰਸਾਦਿ ॥

'ੴ' ୧ଓଂକାର ସତିନାମୁ କରତା ପୁରଖୁ ନିରଭଉ
ନିରୱୈରୁ ଅକାଲ ମୂରତି ଅଜୂନୀ ସୈଭଂ ଗୁର ପ୍ରସାଦି ।।
(ଉଚ୍ଚାରଣ-- ଇକ୍ ଓଂକାର୍ , ସତ୍‌ନାମ୍ , କର୍ତ୍ତା ପୁରୁଖ୍ , ନିରଭଉ ,
ନିରୱୈର୍ , ଅକାଲ୍ ମୂରତ୍ , ଅଜୂନୀ, ସୈଭଂ, ଗୁର୍‌ପ୍ରସାଦ୍ )

ଅର୍ଥ --ସେହି ପରମ ତତ୍ତ୍ୱ , ଯାହାର ବାଚକ ଓଂ, ସେ କେବଳ ଏକ , ଅକାଧିକ ନୁହଂତି । ସେ ସତ୍ୟ ଅର୍ଥାତ୍ ଚିରସ୍ଥିତ । ସେ ସୃଷ୍ଟିର ଜନକ ଓ ତହିଁରେ ପରିବ୍ୟାପ୍ତ । ସେ ଭୟହୀନ । ତାଙ୍କର କାହାରି ସହିତ ହେଲେ ଶତୃତା ନାହିଁ । ତାଙ୍କର ଅସ୍ତିତ୍ୱ କାଳ ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ । ତାଙ୍କର ଜନ୍ମ ନାହିଁ , କାରଣ ସେ ସ୍ୱତ: -ପ୍ରକାଶିତ । ସେ କେବଳ ଗୁରୁ-କୃପା ଦେଇ ହିଁ ଉପଲବ୍ଧ ହେଇଥାନ୍ତି ।

॥ ਜਪੁ ॥

।। ଜପୁ ।।

***ਆਦਿ ਸਚੁ ਜੁਗਾਦਿ ਸਚੁ ।। ਹੈ ਭੀ ਸਚੁ ਨਾਨਕ ਹੋਸੀ ਭੀ ਸਚੁ ।।੧।।***

*ଆଦି ସଚୁ ଜୁଗାଦି ସଚୁ ।। ହୈ ଭୀ ସଚୁ ନାନକ ହୋସୀ ଭୀ ସଚୁ ।।୧ ।।*

ଆଦ୍ୟେ ଏକ ସତ୍ୟ ପୂରି ରହିଥିଲେ,  ଯୁଗାଦ୍ୟରେ ଥିଲେ ସତ୍ୟ,

ରହିଛଂତି ସଦା ସେ ସତ୍ୟ 'ନାନକ' ,  ଥିବେ ସଦା ସେହି ସତ୍ୟ ।।**୧** ।।

*੧--- ਸੋਚੈ ਸੋਚਿ ਨ ਹੋਵਈ ਜੇ ਸੋਚੀ ਲਖ ਵਾਰ।। ਚੁਪੈ ਚੁਪ ਨ ਹੋਵਈ ਜੇ ਲਾਇ ਰਹਾ ਲਿਵ ਤਾਰ।।ਭੁਖਿਆ ਭੁਖ ਨ ਉਤਰੀ ਜੇ ਬੰਨਾ ਪੁਰੀਆ ਭਾਰ।। ਸਹਸ ਸਿਆਣਪਾ ਲਖ ਹੋਹਿ ਤ ਇਕ ਨ ਚਲੈ ਨਾਲਿ।।ਕਿਵ  ਸਚਿਆਰਾ ਹੋਈਐ ਕਿਵ ਕੂੜੈ ਤੁਟੈ ਪਾਲਿ।। ਹੁਕਮਿ ਰਜਾਈ ਚਲਣਾ ਨਾਨਕ ਲਿਖਿਆ ਨਾਲਿ**।।੧।।***

*୧--- ସୋଚୈ ସୋଚି ନ ହୋୱଇ ଜେ ସୋଚୀ ଲଖ ୱାର ।। ଚୁପୈ ଚୁପ ନ ହୋୱଇ ଜେ ଲାଇ ରହା ଲିୱ ତାର ।।ଭୁଖିଆ ଭୁଖ ନ ଉତରୀ ଜେ ବଂନା ପୁରୀଆ ଭାର ।। ସହସ ସିଆଣପା ଲଖ ହୋହି ତ ଇକ ନ ଚଲୈ ନାଲି ।।କିୱ  ସଚିଆରା ହୋଈଐ କିୱ କୂଡ଼ୈ ତୁଟୈ ପାଲି ।। ହୁକମି ରଜାଇ ଚଲଣା ନାନକ ଲିଖିଆ ନାଲି **।।୧ ।।***

ଶୁଚି କରି କିଏ ହେବ ଶୁଚିମନ୍ତ, ଶୁଚି କଲେ ହେଲେ ଲକ୍ଷେକ ବାର ।

ନୀରବରେ ଯେତେ ଧ୍ୟାନ କଲେ ହେଲେ , ମନ ନ ହୁଅଇ କେବେହେଁ ସ୍ଥିର ।।

ଭୋକିଲାର ମନୁ *କ୍ଷୁଧା* ନ ମେଣ୍ଟଇ , ପାଇ *ପୁରୀଧନ* ସମ୍ପତ୍ତି ଜେତେ ।

ସହସ୍ର ଚାତୁରୀ ଲକ୍ଷେ ଥିଲେ ହେଲେ , ଗୋଟିଏ ନ ଚଳେ କାହାରି ସାଥେ ।।

ମିଥ୍ୟାର ପରଦା ଘୁଞ୍ଚିବ କିପରି , ସଦାଚାରୀ କିଏ କିପରି ହେବ ।
ପ୍ରଭୁ ଆଜ୍ଞାରେ ଯେ ଚଳିବ ନାନକ , ଜୀବ ସଙ୍ଗତରେ ଯା ଲେଖାଥିବ ।।୧ ।।

*(( ଷୁଧା- ଜଗତର ତୃଷ୍ଣା ରୂପି କ୍ଷୁଧା, ଲାଳସା ;*
*ପୁରୀଧନ-- ବୈକୁଣ୍ଠପୁରୀ, ଇଂଦ୍ରପୁରୀ,କୁବେରପୁରୀ ଆଦିର ଧନ ସମ୍ପତ୍ତି ))*

*੨--- ਹੁਕਮੀ ਹੋਵਨਿ ਆਕਾਰ ਹੁਕਮੁ ਨ ਕਹਿਆ ਜਾਈ।। ਹੁਕਮੀ ਹੋਵਨਿ ਜੀਅ ਹੁਕਮਿ ਮਿਲੈ ਵਡਿਆਈ।। ਹੁਕਮੀ ਉਤਮੁ ਨੀਚੁ ਹੁਕਮਿ ਲਿਖਿ ਦੁਖ ਸੁਖ ਪਾਈਅਹਿ।। ਇਕਨਾ ਹੁਕਮੀ ਬਖਸੀਸ ਇਕਿ ਹੁਕਮੀ ਸਦਾ ਭਵਾਈਅਹਿ।। ਹੁਕਮੈ ਅੰਦਰਿ ਸਭੁ ਕੋ ਬਾਹਰਿ ਹੁਕਮ ਨ ਕੋਇ।। ਨਾਨਕ ਹੁਕਮੈ ਜੇ ਬੁਝੈ ਤ ਹਉਮੈ ਕਹੈ ਨ ਕੋਇ**।।੨।।***

*୨--- ହୁକମୀ ହୋୱନି ଆକାର ହୁକମୁ ନ କହିଆ ଜାଇ ।। ହୁକମୀ ହୋୱନି ଜୀଅ ହୁକମି ମିଲୈ ୱଡିଆଇ ।। ହୁକମୀ ଉତମୁ ନୀଚୁ ହୁକମି ଲିଖି ଦୁଖୁ ସୁଖୁ ପାଇଅହି ।। ଇକନା ହୁକମୀ ବଖସୀସ ଇକି ହୁକମୀ ସଦା ଭୱାଇଅହି ।। ହୁକମୈ ଅଂଦରି ସଭୁ କୋ ବାହରି ହୁକମ ନ କୋଇ ।। ନାନକ ହୁକମୈ ଜେ ବୁଝୈ ତ ହଉମୈ କହୈ ନ କୋଇ ।।୨ ।।*

ପ୍ରଭୁ ଆଜ୍ଞା ବଳେ ହୋଇଅଛି ସୃଷ୍ଟି, ସେ ଆଜ୍ଞା ରହସ୍ୟ କହି ନୁହଇ ।
ଆଜ୍ଞାରେ ହୁଅଇ ଜୀବର ଉତ୍ପତ୍ତି, ଆଜ୍ଞାରେ ମିଳଇ ଯେତେ ବଡ଼ାଇ ।।
ଆଜ୍ଞାରେ ହୁଅଇ ଜୀବ ଉଚ୍ଚନୀଚ, ଆଜ୍ଞାରେ ଭୋଗଇ ସେ ଦୁଃଖସୁଖ ।
ଆଜ୍ଞାରେ ମିଳଇ ଜନ୍ମ-ମୃତ୍ୟୁ ଚକ୍ର, ଆଜ୍ଞାରେ ଜୀବକୁ ମିଳଇ ମୋକ୍ଷ ।।
ପ୍ରଭୁ ଆଜ୍ଞା ମଧ୍ୟେ ସକଳ ସଂସାର , ଆଜ୍ଞାର ବାହାରେ କିଛି ନଥାଇ ।।
ସେ ଆଜ୍ଞାକୁ ବୁଝି ପାରିଲେ, ନାନକ , ଗର୍ବ ଅହମିକା ରହଇ ନାହିଁ ।।୨ ।।

*੩--- ਗਾਵੈ ਕੋ ਤਾਣੁ ਹੋਵੈ ਕਿਸੈ ਤਾਣੁ।। ਗਾਵੈ ਕੋ ਦਾਤਿ ਜਾਣੈ ਨੀਸਾਣੁ।। ਗਾਵੈ ਕੋ ਗੁਣ ਵਡਿਆਈਆ ਚਾਰ।। ਗਾਵੈ ਕੋ ਵਿਦਿਆ ਵਿਖਮੁ ਵੀਚਾਰੁ।। ਗਾਵੈ ਕੋ ਸਾਜਿ ਕਰੇ ਤਨੁ ਖੇਹ।। ਗਾਵੈ ਕੋ ਜੀਅ ਲੈ ਫਿਰਿ ਦੇਹ।। ਗਾਵੈ ਕੋ ਜਾਪੈ ਦਿਸੈ ਦੂਰਿ।। ਗਾਵੈ ਕੋ ਵੇਖੈ ਹਾਦਰਾ ਹਦੂਰਿ।। ਕਥਨਾ ਕਥੀ ਨ ਆਵੈ ਤੋਟਿ।। ਕਥਿ ਕਥਿ ਕਥੀ ਕੋਟੀ ਕੋਟਿ ਕੋਟਿ।। ਦੇਦਾ ਦੇ ਲੈਦੇ ਥਕਿ ਪਾਹਿ।। ਜੁਗਾ ਜੁਗੰਤਰਿ ਖਾਹੀ ਖਾਹਿ।। ਹੁਕਮੀ ਹੁਕਮੁ ਚਲਾਏ ਰਾਹੁ।।ਨਾਨਕ ਵਿਗਸੈ ਵੇਪਰਵਾਹੁ**।।੩।।***

*୩--- ଗାୱୈ କୋ ତାଣୁ ହୋୱୈ କିସୈ ତାଣୁ ।। ଗାୱୈ କୋ ଦାତି ଜାଣୈ ନୀସାଣୁ ।। ଗାୱୈ କୋ ଗୁଣ ୱଡିଆଈଆ ଚାର ।। ଗାୱୈ କୋ ୱିଦିଆ ୱିଖମୁ ୱୀଚାରୁ ।। ଗାୱୈ କୋ ସାଜି କରେ ତନୁ ଖେହ ।। ଗାୱୈ କୋ ଜୀଅ ଲୈ ଫିରି ଦେହ ।। ଗାୱୈ କୋ ଜାପୈ ଦିସୈ ଦୂରି ।। ଗାୱୈ କୋ ୱେଖୈ ହାଦରା ହଦୂରି ।। କଥନା କଥୀ ନ ଆୱୈ ତୋଟି ।। କଥି କଥି କଥୀ କୋଟୀ କୋଟି କୋଟି ।। ଦେଦା ଦେ ଲୈଦେ ଥକି ପାହି ।। ଜୁଗା ଜୁଗଂତରି ଖାହୀ ଖାହି ।। ହୁକମୀ ହୁକମୁ ଚଲାଏ ରାହୁ ।।ନାନକ ୱିଗସୈ ୱେପରୱାହୁ **।।୩।।***

ଶକତି ଗୁଣକୁ ଗାନ କରେ କିଏ , ପ୍ରଭୁ କୃପା ଶକ୍ତି ଥାଇ ଯାହାର ।
ପ୍ରଭୁଦାନ ଦ୍ରବ୍ୟ ପ୍ରଭୁରୂପ ମଣି , ଗାନ କରେ କିଏ ଗୁଣ ତାହାର ।।
ଗାନ କରେ କିଏ ଅକାଳ ପ୍ରଭୁର , ବଡ଼ିମା ମହିମା ସୁଂଦର ଗୁଣ ।
ଗାନ କରେ କିଏ ବିଦ୍ୟା ବୁଦ୍ଧି ବଳେ , ପ୍ରଭୁ ଗୁଣ ଗୂଢ଼ ତତ୍ତ୍ୱକୁ ପୁଣ ।।
କିଏ ଗାଏ 'ପ୍ରଭୁ ଗଢ଼ଇ ତନୁକୁ, ଭାଙ୍ଗି ଦେଇ ପୁଣି ପାଉଁଶ କରେ' ।
କିଏ ଗାଏ- 'ପ୍ରଭୁ ଏକ ଘଟୁ ନେଇ , ରଖଇ ଜୀବନ ଅନ୍ୟ ଘଟରେ' ।।
ଗାଏ କିଏ- 'ପ୍ରଭୁ ହୁଅଇ ପ୍ରତୀତ , ଦୂରେ ସବୁଠାରୁ ବହୁତ ଦୂରେ' ।
ଗାଏ କିଏ -'ସେତ ସର୍ବମୟ ପ୍ରଭୁ, ସଭୁ ଦେଖୁଅଛି ଥାଇ ସବୁରେ' ।।
ଯେତେ କୁହ କେବେ ଅନ୍ତ ନ ହୁଅଇ , ପ୍ରଭୁ ପରଂବ୍ରହ୍ମ କଥା ଅପାର ।
ଗାୟନ ବର୍ଣ୍ଣନ କରି କୋଟି କୋଟି , କୋଟି ଜନ ତାର କହନ୍ତି ସାର ।।
ହାଲିଆ ହୁଅନ୍ତି ନେଇ ନେଇ ସର୍ବେ , ଦାତା ପ୍ରଭୁ ସଦା ଦେଉଛି ଦାନ ।
ଯୁଗଯୁଗାନ୍ତର ଖାଉଛନ୍ତି ସିନା , ନ ସରଇ କେବେ ତାହାର ଧନ ।।
ପ୍ରଭୁ ଆଜ୍ଞା ସାରା ସଂସାରକୁ ସଦା , ପଥରେ ତାହାର ନିଏ ଚଳାଇ ।
ନାନକ ସେ ପ୍ରଭୁ ଦେଖି ଏ ସୃଷ୍ଟିକି , ଆନନ୍ଦେ ହସଇ ନିଶ୍ଚିନ୍ତ ହୋଇ ।।୩।।

*੪--- ਸਾਚਾ ਸਾਹਿਬੁ ਸਾਚਿ ਨਾਇ ਭਾਖਿਆ ਭਾਉ ਅਪਾਰੁ।। ਆਖਹਿ ਮੰਗਹਿ ਦੇਹਿ ਦੇਹਿ ਦਾਤਿ ਕਰੇ ਦਾਤਾਰੁ।। ਫੇਰਿ ਕਿ ਅਗੈ ਰਖੀਐ ਜਿਤੁ ਦਿਸੈ ਦਰਬਾਰੁ।। ਮੁਹੌ ਕਿ ਬੋਲਣੁ ਬੋਲੀਐ ਜਿਤੁ ਸੁਣਿ ਧਰੇ ਪਿਆਰੁ।। ਅੰਮ੍ਰਿਤ ਵੇਲਾ ਸਚੁ ਨਾਉ ਵਡਿਆਈ ਵੀਚਾਰੁ।। ਕਰਮੀ ਆਵੈ ਕਪੜਾ ਨਦਰੀ ਮੋਖੁ ਦੁਆਰੁ।। ਨਾਨਕ ਏਵੈ ਜਾਣੀਐ ਸਭੁ ਆਪੇ ਸਚਿਆਰੁ**।।੪।।***

*୪--- ସାଚା ସାହିବୁ ସାଚି ନାଇ ଭାଖିଆ ଭାଉ ଅପାରୁ ।। ଆଖହି ମଂଗହି ଦେହି ଦେହି ଦାତି କରେ ଦାତାରୁ ।। ଫେରି କି ଅଗୈ ରଖୀଐ ଜିତୁ ଦିସୈ ଦରବାରୁ ।। ମୁହୌ କି ବୋଲଣୁ ବୋଲୀଐ ଜିତୁ ସୁଣି ଧରେ ପିଆରୁ ।। ଅଂମ୍ରିତ ୱେଲା ସଚୁ ନାଉ ୱଡିଆଈ ୱୀଚାରୁ ।। କରମୀ ଆୱୈ କପଡ଼ା ନଦରୀ ମୋଖୁ ଦୁଆରୁ ।। ନାନକ ଏୱୈ ଜାଣୀଐ ସଭୁ ଆପେ ସଚିଆରୁ ।।୪।।*

ସଦା ଅଟଳ ସେ ଅକାଳ ପୁରୁଷ , ସଚ୍ଚା ଅଟେ ତାର ନ୍ୟାୟ ବିଚାର ।
ଅଟେ ପ୍ରେମମୟ ମଧୁଭାଷା ତାର , ଅନନ୍ତ ସିଏ ତା ଗୁଣ ଅପାର ।।
ମାଗଇ ଦୁନିଆ ଦିଅ ଦିଅ ବୋଲି , ସବୁ କିଛି ସେତ କରଇ ଦାନ ।
ଦରବାରେ ତାର କିସ ଭେଟି ଦେଲେ , ମିଳିବ ନୟନେ ତାର ଦର୍ଶନ ।।
କି ଭାଷାରେ ପ୍ରାଣୀ କି ବୋଲିବ ମୁଖେ , ଶୁଣି ଯାହା ସିଏ କରିବ ପ୍ରେମ ।
ଅମୃତ ବେଳାରେ ଚିନ୍ତିବ ତା ଯଶ , ଆଉ ପୁଣି ତାର ଗାଇବ ନାମ ।।
କର୍ମରେ ମିଳଇ ତନୁ ରୂପେ ବସ୍ତ୍ର , ତା କୃପା ଦୃଷ୍ଟିରେ ମୁକ୍ତିର ଦ୍ୱାର ।।
ନାନକ ଏ ରୂପେ ଜାଣି ରଖ ତୁମେ , ସବୁ ସତ୍ୟ ସେଇ ଏକ ଈଶ୍ୱର ।।୪।।

*੫--- ਥਾਪਿਆ ਨ ਜਾਇ ਕੀਤਾ ਨ ਹੋਇ।। ਆਪੇ ਆਪਿ ਨਿਰੰਜਨੁ ਸੋਇ।। ਜਿਨਿ ਸੇਵਿਆ ਤਿਨਿ ਪਾਇਆ ਮਾਨੁ।। ਨਾਨਕ ਗਾਵੀਐ ਗੁਣੀ ਨਿਧਾਨੁ।। ਗਾਵੀਐ ਸੁਣੀਐ ਮਨਿ ਰਖੀਐ ਭਾਉ।। ਦੁਖੁ ਪਰਹਰਿ ਸੁਖੁ ਘਰਿ ਲੈ ਜਾਇ।। ਗੁਰਮੁਖਿ ਨਾਦੰ ਗੁਰਮੁਖਿ ਵੇਦੰ ਗੁਰਮੁਖਿ ਰਹਿਆ ਸਮਾਈ।। ਗੁਰੁ ਈਸਰੁ ਗੁਰੁ ਗੋਰਖੁ ਬਰਮਾ ਗੁਰੁ ਪਾਰਬਤੀ ਮਾਈ।। ਜੇ ਹਉ ਜਾਣਾ ਆਖਾ ਨਾਹੀ ਕਹਣਾ ਕਥਨੁ ਨ ਜਾਈ ।। ਗੁਰਾ ਇਕ ਦੇਹਿ ਬੁਝਾਈ।। ਸਭਨਾ ਜੀਆ ਕਾ ਇਕੁ ਦਾਤਾ ਸੋ ਮੈ ਵਿਸਰਿ ਨ ਜਾਈ।।੫।।*

*୫--- ଥାପିଆ ନ ଜାଇ କୀତା ନ ହୋଇ ।। ଆପେ ଆପି ନିରଂଜନୁ ସୋଇ ।। ଜିନି ସେୱିଆ ତିନି ପାଇଆ ମାନୁ ।। ନାନକ ଗାୱୀଐ ଗୁଣୀ ନିଧାନୁ ।। ଗାୱୀଐ ସୁଣୀଐ ମନି ରଖୀଐ ଭାଉ ।। ଦୁଖୁ ପରହରି ସୁଖୁ ଘରି ଲୈ ଜାଇ ।। ଗୁରମୁଖି ନାଦଂ ଗୁରମୁଖି ୱେଦଂ ଗୁରମୁଖି ରହିଆ ସମାଇ ।। ଗୁରୁ ଇସରୁ ଗୁରୁ ଗୋରଖୁ ବରମା ଗୁରୁ ପାରବତୀ ମାଇ ।। ଜେ ହଉ ଜାଣା ଆଖା ନାହୀ କହଣା କଥନୁ ନ ଜାଇ ।। ଗୁରା ଇକ ଦେହି ବୁଝାଇ ।। ସଭନା ଜୀଆ କା ଇକୁ ଦାତା ସୋ ମୈ ୱିସରି ନ ଜାଇ ।।୫।।*

କେ କରି ପାରିବ ସ୍ଥାପନା ତାହାର , ଗଢ଼ି କେ ପାରିବ ମୂର୍ତ୍ତି ତାହାର ।
ସେ ପରା ନିର୍ମାୟା ଅନାଦି ଅନନ୍ତ , ଆପେ ନିରଞ୍ଜନ ପରମେଶ୍ୱର ।।
ସେ ଏକପ୍ରଭୁର ସେବା କଲା ଯିଏ , ସିଏ ହିଁ ପାଇଲା ମାନ ସମ୍ମାନ ।
ସ୍ତୁତିଗାନ ତାର କରିବା ନାନକ , ସେ ଅଟେ ସକଳ ଗୁଣ ନିଧାନ ।।
ଗାଇଲେ ଶୁଣିଲେ ସ୍ତୁତି ଗାନ ସଦା , ମନେ ରଖି ପ୍ରେମ ଭକ୍ତି ତାହାର ।
ମନରେ ଆନନ୍ଦ ସୁଖ ବିରାଜିବ , ସବୁ ଦୁଃଖ କ୍ଳେଶ ହୋଇବ ଦୂର ।।
ଗୁରୁ ଉପଦେଶେ ମିଳେ ନାମ ଜ୍ଞାନ , ଗୁରୁ ଉପଦେଶେ ମିଳଇ ମୁକ୍ତି ।
ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁ ଶିବ , ଗୁରୁ ହିଁ ଅଟନ୍ତି ମାତା ପାର୍ବତୀ ।।
ଜାଣିଲେ ବି ମୁହିଁ କହି ନ ପାରିବି , ପ୍ରଭୁ କଥା କରି ନୁହେଁ ବଖାଣ ।
କହି ଦିଅ ଗୁରୁ ସେ ଏକ ଜ୍ଞାନ, ସକଳ ଜୀବର, ସେଇ ଏକ ଦାତା,
ପାଶୋରି ନ ଯାଉ କେବେ ମୋ ମନ ।।୫।।

*੬--- ਤੀਰਥਿ ਨਾਵਾ ਜੇ ਤਿਸੁ ਭਾਵਾ ਵਿਣੁ ਭਾਣੇ ਕਿ ਨਾਇ ਕਰੀ।। ਜੇਤੀ ਸਿਰਠਿ ਉਪਾਈ ਵੇਖਾ ਵਿਣੁ ਕਰਮਾ ਕਿ ਮਿਲੈ ਲਈ।। ਮਤਿ ਵਿਚਿ ਰਤਨ ਜਵਾਹਰ ਮਾਣਿਕ ਜੇ ਇਕ ਗੁਰ ਕੀ ਸਿਖ ਸੁਣੀ।। ਗੁਰਾ ਇਕ ਦੇਹਿ ਬੁਝਾਈ।। ਸਭਨਾ ਜੀਆ ਕਾ ਇਕੁ ਦਾਤਾ ਸੋ ਮੈ ਵਿਸਰਿ ਨ ਜਾਈ।।*__*੬।।*__

*୬--- ତୀରଥି ନାୱା ଜେ ତିସୁ ଭାୱା ୱିଣୁ ଭାଣେ କି ନାଇ କରୀ ।। ଜେତୀ ସିରଠି ଉପାଇ ୱେଖା ୱିଣୁ କରମା କି ମିଲୈ ଲଈ ।। ମତି ୱିଚି ରତନ ଜୱାହର ମାଣିକ ଜି ଇକ ଗୁର କୀ ସିଖ ସୁଣୀ ।। ଗୁରା ଇକ ଦେହି ବୁଝାଇ ।। ସଭନା ଜୀଆ କା ଇକୁ ଦାତା ସୋ ମୈ ୱିସରି ନ ଜାଈ ।।୬ ।।*

ତୀର୍ଥରେ ସ୍ନାହାନ କରିବଇଁ ମୁହିଁ , ଯଦିଚ ପ୍ରଭୁକୁ ଲାଗିବ ପ୍ରିୟ ।
ପ୍ରିୟ ଭାଜନ ମୁଁ ହେବି ନାହିଁ ଯଦି , ତୀର୍ଥ ସ୍ନାନ କରି କି ଲାଭ କୁହ ।।
ସୃଷ୍ଟିରେ ଉତ୍ପତ୍ତି ହୋଇ ଅଛି ଯାହା , ଯାହା କିଛି ଅବା ଦେଖଇ ମୁହିଁ ।
ପୂଣ୍ୟ ନ ସଞ୍ଚିଲେ କେ ପାଇବ କିସ , କର୍ମ ବିନା କିଛି ମିଳଇ ନାହିଁ ।।
ବୁଦ୍ଧିରେ ଅଛଇ ହୀରା ନୀଳା ମୋତି , ଶୁଣିଲେ ଏକଇ ଗୁରୁବଚନ ।
କହି ଦିଅ ଗୁରୁ ସେ ଏକ ଜ୍ଞାନ, ସକଳ ଜୀବର ସେଇ ଏକ ଦାତା ,
ପାଶୋରି ନ ଯାଉ କେବେ ମୋ ମନ ।।୬ ।।

*੭--- ਜੇ ਜੁਗ ਚਾਰੇ ਆਰਜਾ ਹੋਰ ਦਸੂਣੀ ਹੋਇ।। ਨਵਾ ਖੰਡਾ ਵਿਚ ਜਾਣੀਐ ਨਾਲਿ ਚਲੈ ਸਭੁ ਕੋਇ।। ਚੰਗਾ ਨਾਉ ਰਖਾਇ ਕੈ ਜਸੁ ਕੀਰਤਿ ਜਗਿ ਲੇਇ।। ਜੇ ਤਿਸੁ ਨਦਰਿ ਨ ਆਵਈ ਤ ਵਾਤ ਨ ਪੁਛੈ ਕੇ।। ਕੀਟਾ ਅੰਦਰਿ ਕੀਟੁ ਕਰਿ ਦੋਸੀ ਦੋਸੁ ਧਰੇ।। ਨਾਨਕ ਨਿਰਗੁਣਿ ਗੁਣੁ ਕਰੇ ਗੁਣਵੰਤਿਆ ਗੁਣੁ ਦੇ।। ਤੇਹਾ ਕੋਇ ਨ ਸੁਝਈ ਜਿ ਤਿਸੁ ਗੁਣੁ ਕੋਇ ਕਰੇ।।੭।।*

*୭--- ଜେ ଜୁଗ ଚାରେ ଆରଜା ହୋର ଦସୂଣୀ ହୋଇ । । ନୱା ଖଂଡା ୱିଚ ଜାଣୀଐ ନାଲି ଚଲୈ ସଭୁ କୋଇ । । ଚଂଗା ନାଉ ରଖାଇ କୈ ଜସୁ କୀରତି ଜଗି ଲେଇ । । ଜେ ତିସୁ ନଦରି ନ ଆୱଈ ତ ୱାତ ନ ପୁଛୈ କେ । । କୀଟା ଅଂଦରି କୀଟୁ କରି ଦୋସୀ ଦୋସୁ ଧରେ । । ନାନକ ନିରଗୁଣି ଗୁଣୁ କରେ ଗୁଣୱଂତିଆ ଗୁଣୁ ଦେ । । ତେହା କୋଇ ନ ସୁଝଈ ଜେ ତିସୁ ଗୁଣୁ କୋଇ କରେ । ।୭ । ।*

ଚାରି ଯୁଗ ସମ ଆୟୁଷ ହୋଇବ , ଆହୁରି ହୋଇବ ତା ଦଶଗୁଣ ।
ସାରା ସଂସାରରେ ଜାଣିବେ ସଭିଏଁ , ସଙ୍ଗତେ ଚଳିବେ ସମସ୍ତ ଜନ । ।
ଯଶ କୀର୍ତ୍ତି ନର ରଖିବ ଜଗତେ , ହୋଇବ ତାହାର କେତେ ସୁନାମ ।
ପ୍ରଭୁ କୃପା ଦୃଷ୍ଟି ନ ପାଇଲା ଯଦି , ସେ ଆଶ୍ରାହୀନ ତା ବ୍ୟର୍ଥ ଜୀବନ । ।
କୀଟ ମଧ୍ୟେ କ୍ଷୁଦ୍ର କୀଟ ସମାନ , ନାମ ଭୁଲି ସିଏ ପ୍ରଭୁ ଦରବାରେ ,
ଦୋଷୀ ରୂପେ ନିଶ୍ଚେ ହୋଇବ ଗଣ୍ୟ । ।
ନାନକ ନିର୍ଗୁଣେ ଗୁଣ ଦିଏ ପ୍ରଭୁ , ଗୁଣବନ୍ତେ ପୁଣି ଗୁଣ ଦିଅଇ ।
ସେ ସର୍ବଗୁଣକୁ କିଏ ଗୁଣ ଦେବ , ଏପରି କାହିଁ କେ ଦିଶଇ ନାହିଁ । ।୭ । ।

੮--- *ਸੁਣਿਐ ਸਿਧ ਪੀਰ ਸੁਰਿ ਨਾਥ।। ਸੁਣਿਐ ਧਰਤਿ ਧਵਲ ਆਕਾਸ।।ਸੁਣਿਐ ਦੀਪ ਲੋਅ ਪਾਤਾਲ।। ਸੁਣਿਐ ਪੋਹਿ ਨ ਸਕੈ ਕਾਲੁ।। ਨਾਨਕ ਭਗਤਾ ਸਦਾ ਵਿਗਾਸੁ।। ਸੁਣਿਐ ਦੂਖ ਪਾਪ ਕਾ ਨਾਸੁ।।੮।।*

*୮--- ସୁଣିଐ ସିଧ ପୀର ସୁରି ନାଥ । । ସୁଣିଐ ଧରତି ଧୱଲ ଆକାସ । ।ସୁଣିଐ ଦୀପ ଲୋଅ ପାତାଲ । । ସୁଣିଐ ପୋହି ନ ସକୈ କାଲୁ । । ନାନକ ଭଗତା ସଦା ୱିଗାସୁ । । ସୁଣିଐ ଦୂଖ ପାପ କା ନାସୁ । ।୮ । ।*

ପ୍ରଭୁନାମ ଶୁଣି ନର ହୁଏ ସିଦ୍ଧ , ହୁଏ ପୀର ସୁର ହୁଅଇ ନାଥ ।
ନାମ ଆଶ୍ରା ନେଇ ଧରଣୀ ଆକାଶ , ଏହି ସତ୍ୟ ଜ୍ଞାନ ହୁଏ ପ୍ରାପତ । ।

ସେହି ପ୍ରରଂବ୍ରହ୍ମ ସତ୍ୟ ପ୍ରଭୁନାମ , ଶୁଣିଲେ କେବେ ନ ଦଣ୍ଡଇ କାଳ ।।
ଶୁଣି ପ୍ରଭୁନାମ ହେ ନାନକ ସଦା , ଭକ୍ତ ହୃଦ ଥାଇ ଆନନ୍ଦେ ପୂର୍ଣ୍ଣ ।
ଦୁ:ଖ ପାପ ଯେତେ ହୁଅଇ ବିନାଶ , ପ୍ରଭୁ ସତ୍ୟ ନାମ କଲେ ଶ୍ରବଣ ।।୮।।

*(( ସିଦ୍ଧ :- ଅଲୌକିକ ଶକ୍ତି ସମ୍ପନ୍ନ ସିଦ୍ଧି ପ୍ରାପ୍ତ ବ୍ୟକ୍ତି*
*ପୀର :- ମୁସ୍ଲିମ ସାଧୁ, ଆଧ୍ୟାତ୍ମିକ ସାଧନାର ଗୁରୁ*
*ନାଥ :- ଯୋଗୀ ))*

*(( ଦ୍ୱୀପ :- ସପ୍ତଦ୍ୱୀପ- ଜମ୍ବୁ, ପଳାକ୍ଷ, ଶାଲ୍ମଳୀ, କୁଶ, କ୍ରୌଞ୍ଚ, ଶାକ ଓ ପୁଷ୍କର ।*
*ଲୋକ :- ସପ୍ତଲୋକ- ଭୂ: ,ଭୁବ: , ସ୍ୱ: , ମହ: , ଜନ: ,ତପ: , ସତ୍ୟମ୍: ।*
*ପାତାଳ :- ସପ୍ତପାତାଳ-ଅତଳ, ବିତଳ, ସୁତଳ,ତଳାତଲ, ରସାତଳ, ମହାତଳ, ପାତାଳ ))*

੯--- *ਸੁਣਿਐ ਈਸਰੁ ਬਰਮਾ ਇੰਦੁ।। ਸੁਣਿਐ ਮੁਖਿ ਸਾਲਾਹਣ ਮੰਦੁ।। ਸੁਣਿਐ ਜੋਗ ਜੁਗਤਿ ਤਨਿ ਭੇਦ।। ਸੁਣਿਐ ਸਾਸਤ ਸਿਮ੍ਰਿਤਿ ਵੇਦ।। ਨਾਨਕ ਭਗਤਾ ਸਦਾ ਵਿਗਾਸੁ।। ਸੁਣਿਐ ਦੂਖ ਪਾਪ ਕਾ ਨਾਸੁ।।੯।।*

୯--- *ସୁଣିଐ ଇସରୁ ବରମା ଇଂଦୁ ।। ସୁଣିଐ ମୁଖି ସାଲାହଣ ମଂଦୁ ।। ସୁଣିଐ ଜୋଗ ଜୁଗତି ତନି ଭେଦ ।। ସୁଣିଐ ସାସତ ସିମ୍ରିତି ୱେଦ ।। ନାନକ ଭଗତା ସଦା ୱିଗାସୁ ।। ସୁଣିଐ ଦୂଖ ପାପ କା ନାସୁ ।।୯।।*

ନାମ ଶ୍ରବଣର ମହିମାରେ ନର , ଶିବ ବ୍ରହ୍ମା ଇଂଦ୍ର ପଦ ଲଭଇ ।
ଶୁଣି ପ୍ରଭୁ ନାମ ମୁଖେ ଗାଇ ନାମ , ନୀଚ ଜନ ମହା ଜନ ହୁଅଇ ।।
ନାନା ଯୋଗ ଯୁକ୍ତି ଶରୀର ରହସ୍ୟ , ଜାଣି ହୁଏ କଲେ ନାମ ଶ୍ରବଣ ।
ଅଛି ଏକ ପ୍ରଭୁ ନାମ ଶ୍ରବଣର , ମହିମାରେ *ଦ୍ୱୀପ, ଲୋକ, ପାତାଳ* ।
ନାମ ଶ୍ରବଣରେ ଲଭଇ ମଣିଷ , ସ୍ମୃତି ଶାସ୍ତ୍ର ଆଉ ବେଦର ଜ୍ଞାନ ।।
ଶୁଣି ପ୍ରଭୁନାମ ହେ ନାନକ ସଦା , ଭକ୍ତ ହୃଦ ଥାଇ ଆନନ୍ଦେ ପୂର୍ଣ୍ଣ ।
ଦୁ:ଖ ପାପ ଯେତେ ହୁଅଇ ବିନାଶ , ପ୍ରଭୁ ସତ୍ୟନାମ କଲେ ଶ୍ରବଣ ।।୯।।

୧୦--- *ਸੁਣਿਐ ਸਤੁ ਸੰਤੋਖੁ ਗਿਆਨੁ।। ਸੁਣਿਐ ਅਠਸਠਿ ਕਾ ਇਸਨਾਨੁ।। ਸੁਣਿਐ ਪੜਿ ਪੜਿ ਪਾਵਹਿ ਮਾਨੁ।। ਸੁਣਿਐ ਲਾਗੈ ਸਹਜਿ ਧਿਆਨੁ।। ਨਾਨਕ ਭਗਤਾ ਸਦਾ ਵਿਗਾਸੁ।। ਸੁਣਿਐ ਦੂਖ*

*ਪਾਪ ਕਾ ਨਾਸੁ*॥**੧੦**॥

୧୦--- *ସୁଣିଐ ସତୁ ସଂତୋଖୁ ଗିଆନୁ ।। ସୁଣିଐ ଅଠସଠି କା ଇସନାନୁ ।। ସୁଣିଐ ପଡ଼ି ପଡ଼ି ପାଵହି ମାନୁ ।। ସୁଣିଐ ଲାଗୈ ସହଜି ଧିଆନୁ ।। ନାନକ ଭଗତା ସଦା ଵିଗାସୁ ।। ସୁଣିଐ ଦୂଖ ପାପ କା ନାସୁ ।।୧୦।।*

ଶୁଣି ଶୁଣି ନର ପ୍ରଭୁ ସତ୍ୟ ନାମ , ଲଭିଥାଇ ସତ୍ୟ, ସନ୍ତୋଷ ଜ୍ଞାନ ।
ପ୍ରଭୁ ସତ୍ୟନାମ ଶୁଣି ଲଭେ ନର , ଅଠଷଠି ତୀର୍ଥ ସ୍ନାନର ପୁଣ୍ୟ ।।
ଶୁଣିଲେ ଗାଇଲେ ପ୍ରଭୁ ସତ୍ୟନାମ , ମଣିଶ ଲଭଇ ମାନ ସମ୍ମାନ ।
ଶୁଣିଲେ ଗାଇଲେ ପ୍ରଭୁ ସତ୍ୟନାମ , ପ୍ରଭୁଠି ସହଜେ ଲାଗଇ ଧ୍ୟାନ ।
ଶୁଣି ପ୍ରଭୁନାମ ହେ ନାନକ ସଦା , ଭକ୍ତ ହୃଦଥାଇ ଆନନ୍ଦେ ପୂର୍ଣ୍ଣ ।
ଦୁ:ଖ ପାପ ଯେତେ ହୁଅଇ ବିନାଶ , ପ୍ରଭୁ ସତ୍ୟନାମ କଲେ ଶ୍ରବଣ ।।**୧୦**।।

੧੧--- *ਸੁਣਿਐ ਸਰਾ ਗੁਣਾ ਕੇ ਗਾਹ॥ ਸੁਣਿਐ ਸੇਖ ਪੀਰ ਪਾਤਿਸਾਹ॥ ਸੁਣਿਐ ਅੰਧੇ ਪਾਵਹਿ ਰਾਹੁ॥ ਸੁਣਿਐ ਹਾਥ ਹੋਵੈ ਅਸਗਾਹੁ॥ ਨਾਨਕ ਭਗਤਾ ਸਦਾ ਵਿਗਾਸੁ॥ ਸੁਣਿਐ ਦੂਖ ਪਾਪ ਕਾ ਨਾਸੁ*॥**੧੧**॥

୧୧--- *ସୁଣିଐ ସରା ଗୁଣା କେ ଗାହ ।। ସୁଣିଐ ସେଖ ପୀର ପାତିସାହ ।। ସୁଣିଐ ଅଂଧେ ପାଵହି ରାହୁ ।। ସୁଣିଐ ହାଥ ହୋଵୈ ଅସଗାହୁ ।। ନାନକ ଭଗତା ସଦା ଵିଗାସୁ ।। ସୁଣିଐ ଦୂଖ ପାପ କା ନାସୁ ।।୧୧।।*

ଅନନ୍ତ ଗୁଣର ଅଧିକାରୀ ହୁଏ , ପ୍ରଭୁ ନାମ ନର କଲେ ଶ୍ରବଣ ।
ଧନୀ ପୀର ବାଦଶାହାର ସମ୍ମାନ , ମିଳଇ ଶୁଣିଲେ ସେ ପ୍ରଭୁ ନାମ ।।
ପ୍ରଭୁ ନାମ ଶୁଣି ଜ୍ଞାନହୀନ ଅନ୍ଧ , ଖୋଜି ପାଏ ପ୍ରଭୁ ମିଳନ ପଥ ।
ଅଗାଧ ସାଗର ପାର ହୁଏ ନର , ନାମ ଶ୍ରବଣରେ ଦେଲେ ତା ଚିତ୍ତ ।।
ଶୁଣି ପ୍ରଭୁ ନାମ ହେ ନାନକ ସଦା , ଭକ୍ତ ହୃଦଥାଇ ଆନନ୍ଦେ ପୂର୍ଣ୍ଣ ।
ଦୁ:ଖ ପାପ ଯେତେ ହୁଅଇ ବିନାଶ , ପ୍ରଭୁ ସତ୍ୟନାମ କଲେ ଶ୍ରବଣ ।।**୧୧**।।

੧੨--- *ਮੰਨੇ ਕੀ ਗਤਿ ਕਹੀ ਨ ਜਾਇ॥ ਜੇ ਕੋ ਕਹੈ ਪਿਛੈ ਪਛੁਤਾਇ॥ ਕਾਗਦਿ ਕਲਮ ਨ ਲਿਖਣਹਾਰੁ॥ ਮੰਨੇ ਕਾ ਬਹਿ ਕਰਨਿ ਵੀਚਾਰੁ ॥ ਐਸਾ ਨਾਮੁ ਨਿਰੰਜਨੁ ਹੋਇ॥ ਜੇ ਕੋ ਮੰਨਿ ਜਾਣੈ ਮਨਿ ਕੋਇ*॥**੧੨**॥

୧୨--- *ମଂନେ କୀ ଗତି କହୀ ନ ଜାଇ।। ଜେ କୋ କହୈ ପିଛୈ ପଛୁତାଇ।। କାଗଦି କଲମ ନ ଲିଖଣହାରୁ।। ମଂନେ କା ବହି କରନି ୱୀଚାରୁ ।। ଐସା ନାମୁ ନିରଂଜନୁ ହୋଇ।। ଜେ କୋ ମଂନି ଜାଣୈ ମନି କୋଇ ।।**୧୨**।।*

ପ୍ରଭୁ ନାମେ ରତ ଥାଏ ଯାହା ମନ , ତା ଗତି ବର୍ଣ୍ଣନା କରି ନୁହଇ ।
ବର୍ଣ୍ଣନା ଯେ କରେ ପଛେ ଅନୁତାପେ , ଊଣା ହେଲା ବୋଲି ଦୁ:ଖ କରଇ ।।
ନାହିଁତ କାଗଜ ନାହିଁତ କଲମ , କାହିଁ କେଉଁଠି କେ ଲେଖକ ନାହିଁ ।
ଲେଖି କହି ନାମ ଚିନ୍ତନ ମହିମା , କେ କରି ପାରିବ ବିଚାର କାହିଁ ।।
ଏହି ପରି ସେହି ମହିମା ମଣ୍ଡିତ , ପ୍ରଭୁ ନିରଞ୍ଜନ ନାମ ଅଟଇ ।
ପ୍ରଭୁ ନାମେ ରତ ଥାଏ ଯେଉଁ ଜନ , ସେହି ଏକା ଏହା ମନେ ବୁଝଇ ।।**୧୨**।।

੧੩--- *ਮੰਨੈ ਸੁਰਤਿ ਹੋਵੈ ਮਨਿ ਬੁਧਿ।। ਮੰਨੈ ਸਗਲ ਭਵਣ ਕੀ ਸੁਧਿ।।ਮੰਨੈ ਮੁਹਿ ਚੋਟਾ ਨਾ ਖਾਇ।। ਮੰਨੈ ਜਮ ਕੈ ਸਾਥਿ ਨ ਜਾਇ।। ਐਸਾ ਨਾਮੁ ਨਿਰੰਜਨੁ ਹੋਇ।। ਜੇਕੋ ਮੰਨਿ ਜਾਣੈ ਮਨਿ ਕੋਇ।।**੧੩**।।*

୧୩--- *ମଂନୈ ସୁରତି ହୋୱୈ ମନି ବୁଧି।। ମଂନୈ ସଗଲ ଭୱଣ କୀ ସୁଧି।।ମଂନୈ ମୁହି ଚୋଟା ନା ଖାଇ।। ମଂନୈ ଜମ କୈ ସାଥି ନ ଜାଇ।। ଐସା ନାମୁ ନିରଂଜନୁ ହୋଇ।। ଜେକୋ ମଂନି ଜାଣୈ ମନି କୋଇ ।।**୧୩**।।*

ନାମେ ରତ ହେଲେ ଜାଗେ ପ୍ରଭୁ ପ୍ରୀତି , ଶୁଦ୍ଧ ହୁଏ ବୁଦ୍ଧି ମନ ହୃଦୟ ।
ନାମେ ରତ ହେଲେ ହୁଅଇ ମନରେ , ସକଳ ଭୁବନ ଜ୍ଞାନ ଉଦୟ ।।
ପ୍ରଭୁ ସତ୍ୟନାମେ ରତ ହେଲେ ନର , କାଳର ଆଘାତ ନ ଲାଗେ ମୁହେଁ ।
ପ୍ରଭୁ ସତ୍ୟନାମେ ରତ ହେଲେ ନର , ଯମଦୂତ ସଙ୍ଗେ କେବେ ନ ଯାଏ ।।
ଏହି ପରି ସେହି ମହିମା ମଣ୍ଡିତ , ପ୍ରଭୁ ନିରଞ୍ଜନ ନାମ ଅଟଇ ।
ପ୍ରଭୁ ନାମେ ରତ ଥାଏ ଯେଉଁ ଜନ , ସେହି ଏକା ଏହା ମନେ ବୁଝଇ ।।**୧୩**।।

੧੪--- *ਮੰਨੈ ਮਾਰਗਿ ਠਾਕ ਨ ਪਾਇ।। ਮੰਨੈ ਪਤਿ ਸਿਉ ਪਰਗਟੁ ਜਾਇ।। ਮੰਨੈ ਮਗੁ ਨ ਚਲੈ ਪੰਥੁ।। ਮੰਨੈ ਧਰਮ ਸੇਤੀ ਸਨਬੰਧੁ।। ਐਸਾ ਨਾਮੁ ਨਿਰੰਜਨੁ ਹੋਇ।। ਜੇ ਕੋ ਮੰਨਿ ਜਾਣੈ ਮਨਿ ਕੋਇ।।**੧੪**।।*

୧୪--- *ମଂନୈ ମାରଗି ଠାକ ନ ପାଇ । । ମଂନୈ ପତି ସିଉ ପରଗଟୁ ଜାଇ । । ମଂନୈ ମଗୁ ନ ଚଲୈ ପଂଥୁ । । ମଂନୈ ଧରମ ସେତୀ ସନବଂଧୁ । । ଐସା ନାମୁ ନିରଂଜନୁ ହୋଇ । । ଜେ କୋ ମଂନି ଜାଣୈ ମନି କୋଇ **। ।୧୪ । ।***

ନାମେ ରତ ହେଲେ ଜୀବନ ପଥରେ , ବିଷୟ ବିକାର ନ ପାରେ ଛୁଇଁ ।
ନାମେ ରତ ହେଲେ ନର ଯାଏ ଏଥୁଁ , ସମ୍ମାନ ଗୌରବ ସଙ୍ଗତେ ନେଇ । ।
ନାମେ ରତ ଜନ ଚାଲେ ନାହିଁ କେବେ , *ବକଧାର୍ମିକର* ଚଲାପଥରେ ।
ନାମେ ରତ ଜନ ସତ୍ୟ ଅନୁସରେ , ମନ ତାର ଦୃଢ଼ ଥାଏ ଧର୍ମରେ । ।
ଏହି ପରି ସେହି ମହିମା ମଣ୍ଡିତ , ପ୍ରଭୁ ନିରଞ୍ଜନ ନାମ ଅଟଇ ।
ପ୍ରଭୁ ନାମେ ରତ ଥାଏ ଯେଉଁ ଜନ , ସେହି ଏକା ଏହା ମନେ ବୁଝଇ । ।**୧୪** । ।

*(( ବକଧାର୍ମିକ :- ଉପର ଠାଉରିଆ ଭାବେ ଧାର୍ମିକ ବୋଲି ଦେଖାଇ ହେବାକୁ ଧାର୍ମିକ ବେଶ ପୋଷାକ ପିନ୍ଧି ଚିତା ତିଳକ କରି ଚଲୁଥିବା ଲୋକ ))*

੧੫--- *ਮੰਨੈ ਪਾਵਹਿ ਮੋਖੁ ਦੁਆਰੁ ।। ਮੰਨੈ ਪਰਵਾਰੈ ਸਾਧਾਰੁ ।। ਮੰਨੈ ਤਰੈ ਤਾਰੇ ਗੁਰੁ ਸਿਖ।। ਮੰਨੈ ਨਾਨਕ ਭਵਹਿ ਨ ਭਿਖ ।। ਐਸਾ ਨਾਮੁ ਨਿਰੰਜਨੁ ਹੋਇ ।। ਜੇ ਕੋ ਮੰਨਿ ਜਾਣੈ ਮਨਿ ਕੋਇ**।।੧੫।।***

୧୫--- *ମଂନୈ ପାୱହି ମୋଖୁ ଦୁଆରୁ । ।ମଂନୈ ପରୱାରୈ ସାଧାରୁ । । ମଂନୈ ତରୈ ତାରେ ଗୁରୁ ସିଖ । । ମଂନୈ ନାନକ ଭୱହି ନ ଭିଖ । । ଐସା ନାମୁ ନିରଂଜନୁ ହୋଇ । । ଜେ କୋ ମଂନି ଜାଣୈ ମନି କୋଇ **। ।୧୫ । ।***

ପ୍ରଭୁ ନାମେ ରତ ଥାଏ ଯାହା ମନ , ଲଭି ଥାଏ ସେହୁ ମୁକ୍ତିର ଦ୍ୱାର ।
ପ୍ରଭୁ ନାମେ ରତ ଥାଏ ଯାହା ମନ , ମୁକ୍ତ କରିପାରେ ତା ପରିବାର । ।
ନାମେ ରତ ହୋଇ ଗୁରୁ ଆପେ ତରେ , ଆପଣା ଶିଷ୍ୟଙ୍କୁ ପାରଇ ତାରି ।
ପ୍ରଭୁ ନାମେ ରତ ଥାଏ ଯାହା ମନ , ଲଭି ପାରେ ସବୁ *ଭିକ୍ଷା ନ କରି* । ।
ଏହି ପରି ସେହି ମହିମା ମଣ୍ଡିତ , ପ୍ରଭୁ ନିରଞ୍ଜନ ନାମ ଅଟଇ ,
ପ୍ରଭୁ ନାମେ ରତ ଥାଏ ଯେଉଁ ଜନ , ସେହି ଏକା ଏହା ମନେ ବୁଝଇ । ।**୧୫** । ।

*(( ଭିକ୍ଷା ନ କରି:- ପ୍ରଭୁଙ୍କୁ କିଛି ଭିକ୍ଷା ନ କଲେ ମଧ୍ୟ ତାଙ୍କୁ ସବୁକିଛି ମିଳେ ))*

੧੬--- *ਪੰਚ ਪਰਵਾਣ ਪੰਚ ਪਰਧਾਨੁ।। ਪੰਚੇ ਪਾਵਹਿ ਦਰਗਹਿ ਮਾਨੁ।। ਪੰਚੇ ਸੋਹਹਿ ਦਰਿ ਰਾਜਾਨੁ।। ਪੰਚਾ ਕਾ ਗੁਰੁ ਏਕੁ ਧਿਆਨੁ।। ਜੇ ਕੋ ਕਹੈ ਕਰੈ ਵੀਚਾਰੁ।। ਕਰਤੇ ਕੈ ਕਰਣੈ ਨਾਹੀ ਸੁਮਾਰੁ।। ਧੌਲੁ*

ਧਰਮੁ ਦਇਆ ਕਾ ਪੂਤੁ।। ਸੰਤੋਖੁ ਥਾਪਿ ਰਖਿਆ ਜਿਨਿ ਸੂਤਿ।। ਜੇ ਕੋ ਬੁਝੈ ਹੋਵੈ ਸਚਿਆਰੁ।। ਧਵਲੈ ਉਪਰਿ ਕੇਤਾ ਭਾਰੁ।। ਧਰਤੀ ਹੋਰੁ ਪਰੈ ਹੋਰੁ ਹੋਰੁ ।। ਤਿਸ ਤੇ ਭਾਰੁ ਤਲੈ ਕਵਣੁ ਜੋਰੁ।। ਜੀਅ ਜਾਤਿ ਰੰਗਾ ਕੇ ਨਾਵ।। ਸਭਨਾ ਲਿਖਿਆ ਵੁੜੀ ਕਲਾਮ।। ਏਹੁ ਲੇਖਾ ਲਿਖਿ ਜਾਣੈ ਕੋਇ।। ਲੇਖਾ ਲਿਖਿਆ ਕੇਤਾ ਹੋਇ।। ਕੇਤਾ ਤਾਣੁ ਸੁਆਲਿਹੁ ਰੂਪੁ।। ਕੇਤੀ ਦਾਤਿ ਜਾਣੈ ਕੌਣੁ ਕੂਤੁ।। ਕੀਤਾ ਪਸਾਉ ਏਕੋ ਕਵਾਉ।। ਤਿਸ ਤੇ ਹੋਏ ਲਖ ਦਰੀਆਉ।। ਕੁਦਰਤਿ ਕਵਣ ਕਹਾ ਵੀਚਾਰੁ।। ਵਾਰਿਆ ਨ ਜਾਵਾ ਏਕ ਵਾਰ।। ਜੋ ਤੁਧੁ ਭਾਵੈ ਸਾਈ ਭਲੀ ਕਾਰ।। ਤੂ ਸਦਾ ਸਲਾਮਤਿ ਨਿਰੰਕਾਰ**।।੧੬।।**

୧୬--- ପଂଚ ପରୱାଣ ପଂଚ ପରଧାନୁ ।। ପଂଚେ ପାୱହି ଦରଗହି ମାନୁ ।। ପଂଚେ ସୋହହି ଦରି ରାଜାନୁ ।। ପଂଚା କା ଗୁରୁ ଏକୁ ଧିଆନୁ ।। ଜେ କୋ କହୈ କରୈ ୱୀଚାରୁ ।। କରତେ କୈ କରଣୈ ନାହୀ ସୁମାରୁ ।। ଧୌଲୁ ଧରମୁ ଦଇଆ କା ପୂତୁ ।। ସଂତୋଖୁ ଥାପି ରଖିଆ ଜିନି ସୂତି ।। ଜେ କୋ ବୁଝୈ ହୋୱୈ ସଚିଆରୁ ।। ଧୱଲୈ ଉପରି କେତା ଭାରୁ ।। ଧରତୀ ହୋରୁ ପରୈ ହୋରୁ ହୋରୁ ।। ତିସ ତେ ଭାରୁ ତଲୈ କୱଣୁ ଜୋରୁ ।। ଜୀଅ ଜାତି ରଂଗା କେ ନାୱ ।। ସଭନା ଲିଖିଆ ୱୁଡ଼ୀ କଲାମ ।। ଏହୁ ଲେଖା ଲିଖି ଜାଣୈ କୋଇ ।। ଲେଖା ଲିଖିଆ କେତା ହୋଇ ।। କେତା ତାଣୁ ସୁଆଲିହୁ ରୂପୁ ।। କେତୀ ଦାତି ଜାଣୈ କୌଣୁ କୂତୁ ।। କୀତା ପସାଉ ଏକୋ କୱାଉ ।। ତିସ ତେ ହୋଏ ଲଖ ଦରୀଆଉ ।। କୁଦରତି କୱଣ କହା ୱୀଚାରୁ ।। ୱାରିଆ ନ ଜାୱା ଏକ ୱାର ।। ଜୋ ତୁଧୁ ଭାୱୈ ସାଈ ଭଲୀ କାର ।। ତୂ ସଦା ସଲାମତି ନିରଂକାର **।।୧୬।।**

ପ୍ରଭୁ ପ୍ରିୟ ପଞ୍ଚ ହୁଏ ସ୍ୱୀକୃତ , ପ୍ରଭୁ ପ୍ରିୟ ପଞ୍ଚ ହୁଏ ପ୍ରଧାନ ।
ପ୍ରଭୁ ପ୍ରିୟ ପଞ୍ଚ ହୁଏ ପ୍ରଭୁ ଦରବାରେ , ପ୍ରଭୁ ଶରଣରେ ଲଭେ ସମ୍ମାନ ।।
ପ୍ରଭୁ ପ୍ରିୟ ପଞ୍ଚ ରାଜ ଦରବାରେ , ଶୋଭାଯୁକ୍ତ ହୁଏ ବଢ଼ାଇ ମାନ,
ପ୍ରଭୁ ପ୍ରିୟ ପଞ୍ଚ ସଦା ସଦା ଏକ , ପରମଗୁରୁଙ୍କୁ କରଇ ଧ୍ୟାନ ।।
ଯେତେ ପାରେ ଯିଏ ଧ୍ୟାନ କରୁ ଆଉ , ଯେତେ ପାରେ ଯିଏ କରୁ ବିଚାର ।
ସୃଷ୍ଟି କର୍ତ୍ତା ଯାହା କରିଛି ରଚନା , ପାଇବ ନାହିଁ କେ ଅନ୍ତ ତାହାର ।।
ଧର୍ମ ହିଁ ଅଟଇ ସେ ଧବଳ ବୃଷ , ଯା ଶିଂଘ ଉପରେ ସଂସାର ସ୍ଥିର ।
ବନ୍ଧାଥାଇ ସିଏ ସନ୍ତୋଷ ଡୋରିରେ , ଅଟଇ ସେ ଧର୍ମ ଦୟାର ପୁତ୍ର ।।
ଏହି ରହସ୍ୟକୁ ଯେ ବୁଝି ପାରଇ , ହୁଅଇ ସଚ୍ଚା ସେ ହୁଅଇ ଜ୍ଞାନୀ ।
ବୃଷ କି ବୋହିବ ସଂସାରର ଭାର , କେତେ ବୋଝ କିଏ ପାରିଛି ଜାଣି ।।
ଏ ସଂସାର ଛାଡ଼ି ଆହୁରି ଆହୁରି , ଅଛଇ ଆହୁରି କେତେ ସଂସାର ।

କେ କହି ପାରିବ ଭାର ତଳେ ତାର , ରହିଅଛି ଆଉ ଶକ୍ତି କାହାର ।।
ସୃଷ୍ଟିରେ ରହିଛି କେତେ ଜୀବ ଯନ୍ତୁ , କେତେ ଜାତି ରଙ୍ଗ କେତେ ଯେ ନାମ ।
ସବୁରି ମସ୍ତକେ ଲେଖା ହୋଇ ଅଛି , ଈଶ୍ୱର ଆଦେଶ ସହିତେ କର୍ମ ।।
କିଏ ଭଲା ଲେଖି ଜାଣିବ ଏ ଲେଖା , କାହାର ବା ଅଛି ଶକତି ଏତେ ।
ସେ ଲେଖା ଲେଖିଲେ କେ ଦେବ ହିସାବ , କିଏ ବା ଜାଣିବ ହୋଇବ କେତେ ।।
କେ କହିବ କେତେ ତୋହର ଶକତି , ରୂପ ପୁଣି ତୋର କେତେ ସୁନ୍ଦର ।
ଅଟଇ ଅନନ୍ତ ଦାନ ପରା ତୋର , କେ କରି ପାରିବ କଳନା ତୋର ।।
ଉଚ୍ଚାରିଲୁ ଯେବେ ତୁହି ଏକ ଆଜ୍ଞା , ସୃଷ୍ଟି ହୋଇ ତାର ହେଲା ବିସ୍ତାର ।
ତୋର ସେ ଆଜ୍ଞାରୁ ବହିଲା ସୃଷ୍ଟିରେ , ଜୀବନ ଲୀଳାର ଅନେକ ଧାର ।।
ନାହିଁ ପ୍ରଭୁ ନାହିଁ ଶକତି ମୋହର , ପରଖିବା ପାଇଁ ମହିମା ତୋର ।
ସମର୍ପିତ ହେବି ତୋହଠାରେ ଥରେ , କାହିଁ ପ୍ରଭୁ ସେଇ ଯୋଗ୍ୟତା ମୋର ।।
ସୃଷ୍ଟିକି ଉତ୍ତମ ଅଟେ ସେହି କାର୍ଯ୍ୟ , ଯେଉଁ କାର୍ଯ୍ୟ ତୋତେ ଲାଗଇ ଭଲ ।
ତୁ ସୃଷ୍ଟି କରତା ପରମାତ୍ମା ପ୍ରଭୁ , ନିରାକାର ତୁହି ସଦା ଅଟଳ ।।**୧୬**।।

*(( ପ୍ରଭୁ ପ୍ରିୟ ପଞ୍ଚ :- ସଜ୍ଜନ, ଯିଏ ସତ୍, ସନ୍ତୋଷ, ଧୈର୍ଯ୍ୟ, ଧର୍ମ, ଦୟା ଆଦି ପାଞ୍ଚଗୁଣ ଧାରଣ କରିଥାଏ । ଯିଏ ଶବ୍ଦ, ସ୍ପର୍ଶ, ରସ, ରୂପ, ଗନ୍ଧ ଆଦି ପାଞ୍ଚ ବିଷୟକୁ ନିରୋଧ କରିପାରନ୍ତି । ଯାହାକୁ ଆକାଶ, ଧରିତ୍ରୀ, ଜଳ, ବାୟୁ ଓ ଅଗ୍ନି ଏହି ପଞ୍ଚତତ୍ତ୍ୱର ପାଞ୍ଚଗୁଣ ଯଥା ନିବୃତ୍ତି ଧୈର୍ଯ୍ୟ, ନିର୍ମଳତା,ସମାନତା ଯଥା ଲାଭ ସନ୍ତୋଷ ପ୍ରାପ୍ତ ହୋଇଅଛି । ଯିଏ କାମ, କ୍ରୋଧ, ଲୋଭ, ମୋହ, ଅହଂକାର ଆଦି ପାଞ୍ଚ ବାସନାରେ ବିଜୟଲାଭ କରିଛି ସେ ପ୍ରାଣୀ । ))*

*੧੭--- ਅਸੰਖ ਜਪ ਅਸੰਖ ਭਾਉ।। ਅਸੰਖ ਪੂਜਾ ਅਸੰਖ ਤਪ ਤਾਉ।। ਅਸੰਖ ਗਰੰਥ ਮੁਖਿ ਵੇਦ ਪਾਠ।। ਅਸੰਖ ਜੋਗਿ ਮਨਿ ਰਹਹਿ ਉਦਾਸ।। ਅਸੰਖ ਭਗਤ ਗੁਣ ਗਿਆਨ ਵੀਚਾਰ।। ਅਸੰਖ ਸਤੀ ਅਸੰਖ ਦਾਤਾਰ।। ਅਸੰਖ ਸੂਰ ਮੁਹ ਭਖ ਸਾਰ।। ਅਸੰਖ ਮੋਨਿ ਲਿਵ ਲਾਇ ਤਾਰ।। ਕੁਦਰਤਿ ਕਵਣ ਕਹਾ ਵੀਚਾਰੁ।। ਵਾਰਿਆ ਨ ਜਾਵਾ ਏਕ ਵਾਰ।। ਜੋ ਤੁਧੁ ਭਾਵੈ ਸਾਈ ਭਲੀ ਕਾਰ।। ਤੂ ਸਦਾ ਸਲਾਮਤਿ ਨਿਰੰਕਾਰ।। **੧੭**।।*

*୧୭--- ଅସଂଖ ଜପ ଅସଂଖ ଭାଉ ।। ଅସଂଖ ପୂଜା ଅସଂଖ ତପ ତାଉ ।। ଅସଂଖ ଗରଂଥ ମୁଖି ୱେଦ ପାଠ ।। ଅସଂଖ ଜୋଗି ମନି ରହହି ଉଦାସ ।। ଅସଂଖ ଭଗତ*

*ଗୁଣ ଗିଆନ ୱୀଚାର ।। ଅସଂଖ ସତୀ ଅସଂଖ ଦାତାର ।। ଅସଂଖ ସୂର ମୁହ ଭଖ ସାର ।। ଅସଂଖ ମୋନି ଲିୱ ଲାଇ ତାର ।। କୁଦରତି କୱଣ କହା ୱୀଚାରୁ ।। ୱାରିଆ ନ ଜାୱା ଏକ ୱାର ।। ଜୋ ତୁଧୁ ଭାୱୈ ସାଈ ଭଲୀ କାର ।। ତୂ ସଦା ସଲାମତି ନିରଂକାର* ***।। ୧୭ ।।***

ତୋ ଅସଂଖ୍ୟ ନାମେ ଅଗଣିତ ଜପ , ଅସୀମ ଭକତି ଭାବ ତୋ ପାଇଁ ।
ଅସଂଖ୍ୟ ବିଧିରେ ପୂଜା ହୁଏ ତୋର , *ତପରେ ତାପର* ଗଣନା ନାହିଁ ।।
ବହୁ ଗ୍ରନ୍ଥ ବେଦ ପାଠ କରି ମୁଖେ, ଅସଂଖ୍ୟ କରନ୍ତି ସ୍ତୁତି ତୋହର ।
ଅଗଣିତ ଯୋଗୀ ମାୟାଠାରୁ ଦୂରେ , ଯୋଗ ସାଧୁଛନ୍ତି କେତେ ପ୍ରକାର ।।
ଅସଂଖ୍ୟ ଭକ୍ତ ତୋ ଗୁଣ ଗାଉଛନ୍ତି , ନିଜ ନିଜ ଜ୍ଞାନେ ତୋ ଗୁଣ ଗୁଣି ।
ଗାଉଛନ୍ତି ଗୁଣ ବହୁ ସତ୍ୟବ୍ରତ , ଗାଉଛନ୍ତି ଗୁଣ ଅସଂଖ୍ୟ ଦାନୀ ।।
ବହୁ ଶୂରବୀର ତୋ ପ୍ରତିଷ୍ଠା ଲାଗି , ସମ୍ମୁଖ ଯୁଦ୍ଧରେ ଦିଅନ୍ତି ପ୍ରାଣ ।
ବହୁ ମୌନବ୍ରତୀ ଏକ ଲୟ ହୋଇ , ମଉନେ ତୋହର କରନ୍ତି ଧ୍ୟାନ ।।
ନାହିଁ ପ୍ରଭୁ ନାହିଁ ଶକତି ମୋହର , ପରଖିବା ପାଇଁ ମହିମା ତୋର ।
ସମର୍ପିତ ହେବି ତୋହଠାରେ ଥରେ , କାହିଁ ପ୍ରଭୁ ସେଇ ଯୋଗ୍ୟତା ମୋର ।।
ସୃଷ୍ଟିକି ଉତ୍ତମ ଅଟେ ସେହି କାର୍ଯ୍ୟ , ଯେଉଁ କାର୍ଯ୍ୟ ତୋତେ ଲାଗଇ ଭଲ ।
ତୁ ସୃଷ୍ଟି କରତା ପରମାତ୍ମା ପ୍ରଭୁ , ନିରାକାର ତୁହି ସଦା ଅଟଳ ।।**୧୭**।।

*(( ତପରେ ତାପର - ସାଧନା ନିମନ୍ତେ ସହିବାକୁ ହେଉଥିବା କଷ୍ଟ ଓ ଯନ୍ତ୍ରଣାର ସୀମା ନାହିଁ ))*

੧੮--- *ਅਸੰਖ ਮੂਰਖ ਅੰਧ ਘੋਰ।। ਅਸੰਖ ਚੋਰ ਹਰਾਮਖੋਰ।। ਅਸੰਖ ਅਮਰ ਕਰਿ ਜਾਹਿ ਜੋਰ।। ਅਸੰਖ ਗਲਵਢ ਹਤਿਆ ਕਮਾਹਿ।। ਅਸੰਖ ਪਾਪੀ ਪਾਪੁ ਕਰਿ ਜਾਹਿ।। ਅਸੰਖ ਕੂੜਿਆਰ ਕੂੜੇ ਫਿਰਾਹਿ।। ਅਸੰਖ ਮਲੇਛ ਮਲੁ ਭਖਿ ਖਾਹਿ।। ਅਸੰਖ ਨਿੰਦਕ ਸਿਰਿ ਕਰਹਿ ਭਾਰੁ।। ਨਾਨਕੁ ਨੀਚੁ ਕਹੈ ਵੀਚਾਰੁ।। ਵਾਰਿਆ ਨ ਜਾਵਾ ਏਕ ਵਾਰ।। ਜੋ ਤੁਧੁ ਭਾਵੈ ਸਾਈ ਭਲੀ ਕਾਰ।। ਤੂ ਸਦਾ ਸਲਾਮਤਿ ਨਿਰੰਕਾਰ*।।**੧੮**।।

୧୮--- *ଅସଂଖ ମୂରଖ ଅଂଧ ଘୋର ।। ଅସଂଖ ଚୋର ହରାମଖୋର ।। ଅସଂଖ ଅମର କରି ଜାହି ଜୋର ।। ଅସଂଖ ଗଲୱଢ ହତିଆ କମାହି ।। ଅସଂଖ ପାପୀ ପାପୁ କରି ଜାହି ।। ଅସଂଖ କୂଡ଼ିଆର କୂଡ଼େ ଫିରାହି ।। ଅସଂଖ ମଲେଛ ମଲୁ ଭଖି ଖାହି ।। ଅସଂଖ ନିଂଦକ ସିରି କରହି ଭାରୁ ।। ନାନକୁ ନୀଚୁ କହୈ ୱୀଚାରୁ ।। ୱାରିଆ ନ ଜାୱା*

*ଏକ ୱାର । । ଜୋ ତୁଧୁ ଭାୱୈ ସାଇ ଭଲୀ କାର । । ତୂ ସଦା ସଲାମତି ନିରଂକାର । ।୧୮ । ।*

କୁକର୍ମରେ ରତ ମୂର୍ଖ ମହାମୂର୍ଖ ,  ଅସଂଖ୍ୟ ଅଛନ୍ତି ସୃଷ୍ଟିରେ ତୋର ।
ଅଛନ୍ତି ସୃଷ୍ଟିରେ ପରଧନ ଖିଆ ,  କର୍ତ୍ତବ୍ୟ ବିମୁଖ ଅସଂଖ୍ୟ ଚୋର । ।
ଜୋର୍-ଜୁଲମରେ ଶାସନ ଚଳାଇ , ଯାଆନ୍ତି ଅସଂଖ୍ୟ ବାହୁର ବଳେ ।
ରକତର ସୁଅ ଦିଅନ୍ତି ବୁହାଇ , କେତେ ଗଳା କଟା ତୋର ସଂସାରେ । ।
ଅଗଣିତ ପାପୀ ଅର୍ଜି ପାପ ରାଶି , ଯାଉଛନ୍ତି ଛାଡ଼ି ତୋର ସଂସାର ।
ବହୁ ମିଥ୍ୟାବାଦି ମିଥ୍ୟାଚାରୀ ଏଠି , କରି ବୁଲୁଛନ୍ତି ମିଥ୍ୟା ପ୍ରସାର । ।
କୁକର୍ମେ ଅରଜି ବହୁପାପ ଧନ , ଅଗଣିତ ମ୍ଳେଛ ଖାଆନ୍ତି ମଳ ।
ଅସଂଖ୍ୟ ନିନ୍ଦୁକ ନିନ୍ଦି ବିନା ଦୋଷେ , ବୋହୁଛନ୍ତି ମୁଣ୍ଡେ ପାପର ଭାର । ।
ମୁଁ ନୀଚ ନାନକ ଦେଖି ଦେଖି ସବୁ ,  କହୁ ଅଛି ମାତ୍ର ଏହି ବିଚାର ।
ସମର୍ପିତ ହେବି ତୋହ ଠାରେ ଥରେ ,  କାହିଁ ପ୍ରଭୁ ସେଇ  ଯୋଗ୍ୟତା ମୋର । ।
ସୃଷ୍ଟିକି ଉତ୍ତମ ଅଟେ ସେହି କାର୍ଯ୍ୟ , ଯେଉଁ କାର୍ଯ୍ୟ ତୋତେ ଲାଗଇ ଭଲ ।
ତୁ ସୃଷ୍ଟି କରତା ପରମାତ୍ମା ପ୍ରଭୁ ,  ନିରାକାର ତୁହି ସଦା ଅଟଳ । ।୧୮ । ।

*੧੯--- ਅਸੰਖ ਨਾਵ ਅਸੰਖ ਥਾਵ।। ਅਗੰਮ ਅਗੰਮ ਅਸੰਖ ਲੋਅ।। ਅਸੰਖ ਕਹਹਿ ਸਿਰਿ ਭਾਰੁ ਹੋਇ।। ਅਖਰੀ ਨਾਮੁ ਅਖਰੀ ਸਾਲਾਹ।। ਅਖਰੀ ਗਿਆਨੁ ਗੀਤ ਗੁਣ ਗਾਹ।। ਅਖਰੀ ਲਿਖਣੁ ਬੋਲਣੁ ਬਾਣਿ।। ਅਖਰਾ ਸਿਰਿ ਸੰਜੋਗੁ ਵਖਾਣਿ।। ਜਿਨਿ ਏਹਿ ਲਿਖੇ ਤਿਸੁ ਸਿਰਿ ਨਾਹਿ।। ਜਿਵ ਫੁਰਮਾਏ ਤਿਵ ਤਿਵ ਪਾਹਿ।। ਜੇਤਾ ਕੀਤਾ ਤੇਤਾ ਨਾਉ।। ਵਿਣੁ ਨਾਵੈ ਨਾਹੀ ਕੋ ਥਾਉ।। ਕੁਦਰਤਿ ਕਵਣ ਕਹਾ ਵੀਚਾਰੁ।। ਵਾਰਿਆ ਨ ਜਾਵਾ ਏਕ ਵਾਰ।। ਜੋ ਤੁਧੁ ਭਾਵੈ ਸਾਈ ਭਲੀ ਕਾਰ।। ਤੂ ਸਦਾ ਸਲਾਮਤਿ ਨਿਰੰਕਾਰ ।।੧੯।।*

*୧୯--- ଅସଂଖ ନାୱ ଅସଂଖ ଥାୱ । । ଅଗଂମ ଅଗଂମ ଅସଂଖ ଲୋଅ । । ଅସଂଖ କହହି ସିରି ଭାରୁ ହୋଇ । । ଅଖରୀ ନାମୁ ଅଖରୀ ସାଲାହ । । ଅଖରୀ ଗିଆନୁ ଗୀତ ଗୁଣ ଗାହ । । ଅଖରୀ ଲିଖଣୁ ବୋଲଣୁ ବାଣି । । ଅଖରା ସିରି ସଂଜୋଗୁ ୱଖାଣି । । ଜିନି ଏହି ଲିଖେ ତିସୁ ସିରି ନାହି । । ଜିୱ ଫୁରମାଏ ତିୱ ତିୱ ପାହି । । ଜେତା କୀତା ତେତା ନାଉ । । ୱିଣୁ ନାୱୈ ନାହୀ କୋ ଥାଉ । । କୁଦରତି କୱଣ କହା ୱୀଚାରୁ । । ୱାରିଆ ନ*

*ଜାଓ୍ଵା ଏକ ଓ୍ଵାର । । ଜୋ ତୁଧୁ ଭାଵୈ ସାଈ ଭଲୀ କାର । । ତୂ ସଦା ସଲାମତି ନିରଂକାର*
***। ।୧୯ । ।***

ଅସଂଖ୍ୟ ତାହାର ନାମ ରହିଅଛି ,  ଅସଂଖ୍ୟ ତାହାର ଅଛି ଆସ୍ଥାନ  ।
ଅସଂଖ୍ୟ *ଲୋକ* ତା ସୃଷ୍ଟିରେ ରହିଛି , ଯହିଁ କରି ହୁଏ ନାହିଁ ଗମନ  । ।
ଯଥାର୍ଥ ନୁହଇ 'ଅସଂଖ୍ୟ' ଶବଦ , ତା ମହିମା ଲେଖା କହିବା ପାଇଁ  ।
କିଏ ତା କହିବ 'ଅସଂଖ୍ୟ' ଶବଦେ ,  ଯେ କହେ ତା ମଥା ଭାରି ହୁଅଇ । ।
ଅକ୍ଷରରେ ତାର ନାମ ଉଚ୍ଚାରଣ , ଅକ୍ଷରରେ ହୁଏ ତା ସ୍ତୁତିଗାନ  ।
ଅକ୍ଷରରେ ତାର ଗୁଣ ଗାଇ ହୁଏ ,  ଅକ୍ଷରରେ ମିଳେ ତାହାର ଜ୍ଞାନ  । ।
ଅକ୍ଷରରେ ଏକା ବୋଲି ହୁଏ ବାଣୀ , ଅକ୍ଷରରେ ଏକା ଲେଖି ହୁଅଇ
ଅକ୍ଷରରେ ଏକା ସଂଯୋଗର ଲେଖା , ସବୁରି କପାଳେ ଲିଖିତ ଥାଇ  । ।
ଯେ ଏହା ଲେଖୁଚି ସବୁରି କପାଳେ ,  ତାହାର କପାଳେ ଲେଖିବ କିଏ
ତାହା ତାହା ପ୍ରାଣୀ ଭୋଗଇ ସଂସାରେ ,  ଯାହା ଭୋଗୁ ବୋଲି କହଇ ସିଏ  । ।
ଯେତେ ଯେତେ ସୃଷ୍ଟି ରଚି ଅଛି ପ୍ରଭୁ ,  ସେତିକି ରହିଛି ତାହାର ନାମ  ।
ତା ନାମ ନଥାଇ ନାହିଁ ନାହିଁ ନାହିଁ , ଏପରି କେଉଁଠି ନାହିଁତ ସ୍ଥାନ  । ।
ନାହିଁ ପ୍ରଭୁ ନାହିଁ ଶକତି ମୋହର ,  ପରଖି ଦେଖିବି ମହିମା ତୋର  ।
ସମର୍ପିତ ହେବି ତୋହଠାରେ ଥରେ , କାହିଁ ପ୍ରଭୁ ସେଇ ଯୋଗ୍ୟତା ମୋର  । ।
ସୃଷ୍ଟିକି ଉତ୍ତମ ଅଟେ ସେହି କାର୍ଯ୍ୟ ,  ଯେଉଁ କାର୍ଯ୍ୟ ତୋତେ ଲାଗଇ ଭଲ  ।
ତୂ ସୃଷ୍ଟି କରତା ପରମାତ୍ମା ପ୍ରଭୁ ,  ନିରାକାର ତୁହି ସଦା ଅଟଳ  । ।**୧୯** । ।
*(( ଲୋକ:-- ଇନ୍ଦ୍ର ଲୋକ, ଦେବ ଲୋକ, ବୈକୁଣ୍ଠ ଲୋକ ଆଦି*
*ଅସଂଖ୍ୟ ଅଗମ୍ୟ  ଲୋକ ))*

୨୦--- *ਭਰੀਐ ਹਥੁ ਪੈਰੁ ਤਨੁ ਦੇਹ।। ਪਾਣੀ ਧੋਤੈ ਉਤਰਸੁ ਖੇਹ।। ਮੂਤ ਪਲੀਤੀ ਕਪੜੁ ਹੋਇ।। ਦੇ ਸਾਬੂਣੁ ਲਈਐ ਓਹੁ ਧੋਇ।।ਭਰੀਐ ਮਤਿ ਪਾਪਾ ਕੈ ਸੰਗਿ।। ਓਹੁ ਧੋਪੈ ਨਾਵੈ ਕੈ ਰੰਗਿ।। ਪੁੰਨੀ ਪਾਪੀ ਆਖਣੁ ਨਾਹਿ।। ਕਰਿ ਕਰਿ ਕਰਣਾ ਲਿਖਿ ਲੈ ਜਾਹੁ।। ਆਪੇ ਬੀਜਿ ਆਪੇ ਹੀ ਖਾਹੁ।। ਨਾਨਕ ਹੁਕਮੀ ਆਵਹੁ ਜਾਹੁ* ***।। ੨੦।।***

୨୦--- *ଭରୀଐ ହଥୁ ପୈରୁ ତନୁ ଦେହ । । ପାଣୀ ଧୋତୈ ଉତରସୁ ଖେହ । । ମୂତ ପଲୀତୀ କପଡୁ ହୋଇ । । ଦେ ସାବୂଣୁ ଲଈଐ ଓହୁ ଧୋଇ । ।ଭରୀଐ ମତି ପାପା କୈ*

*ସଂଗି । । ଓହୁ ଧୋପୈ ନାୱୈ କୈ ରଂଗି । । ପୁଂନୀ ପାପୀ ଆଖଣୁ ନାହି । । କରି କରି କରଣା ଲିଖି ଲୈ ଜାହୁ । । ଆପେ ବୀଜି ଆପେ ହୀ ଖାହୁ । । ନାନକ ହୁକମୀ ଆୱହୁ ଜାହୁ* **। । ୨୦ । ।**

ହସ୍ତ ପଦ ଅବା ସମ୍ପୂର୍ଣ୍ଣ ଶରୀର , ମଇଳାରେ ପୂର୍ଣ୍ଣ ହୁଅଇ ଯେବେ ।
ଜଳ ଦେଇ ଧୋଇ ଘଷିମାଜି ହେଲେ , ଧୂଳି ମଳି ଦୂର ହୁଅଇ ତେବେ । ।
ମଳମୂତ୍ର ଆଦି ସଂସ୍ପର୍ଶରେ ଆସି , ବସ୍ତ୍ର ଯେବେ ଅପବିତ୍ର ହୁଅଇ ।
ପବିତ୍ର ହୁଅଇ ସେହି ବସ୍ତ୍ର ପୁଣି , ସାବୁନ ପାଣିରେ ଦେଲେ ତ ଧୋଇ । ।
ପାପ ଚିନ୍ତା ପାପ କର୍ମର କାରଣେ , ବୁଦ୍ଧି ଯେତେ ବେଳେ ହୁଏ ମଳିନ ।
ସେହି ପାପ ମଳ ହୋଇ ଯାଏ ଦୂର , ବୁଦ୍ଧି ହୁଏ ଶୁଦ୍ଧ ଜପିଲେ ନାମ । ।
ପାପ ଆଉ ପୂଣ୍ୟ ଦୁଇଟି ଶବଦ , ନୁହଇ କେବଳ କହିବା ପାଇଁ ।
ଯେଉଁ ପରି କର୍ମ କରିବୁ ସଂସାରେ , ଲେଖି ନେଇ ଯିବୁ ସଙ୍ଗତେ ତୁହି । ।
ଯାହା ତୁ ବୁଣିବୁ ତାହା ତୁ ଦାଇବୁ , ଯାହା ତୁ ବୁଣିବୁ ତାହା ଭୁଞ୍ଜିବୁ ।
ନାନକ ତୋହର କର୍ମଫଳ ଧରି , ଅକାଳ ଆଜ୍ଞାରେ ଆସିବୁ ଯିବୁ । ।୨୦ । ।

੨੧--- *ਤੀਰਥੁ ਤਪੁ ਦਇਆ ਦਤੁ ਦਾਨੁ।। ਜੇ ਕੋ ਪਾਵੈ ਤਿਲ ਕਾ ਮਾਨੁ।। ਸੁਣਿਆ ਮੰਨਿਆ ਮਨਿ ਕੀਤਾ ਭਾਉ।। ਅੰਤਰਗਤਿ ਤੀਰਥਿ ਮਲਿ ਨਾਉ।। ਸਭਿ ਗੁਣ ਤੇਰੇ ਮੈ ਨਾਹੀ ਕੋਇ।। ਵਿਣੁ ਗੁਣ ਕੀਤੇ ਭਗਤਿ ਨ ਹੋਇ।। ਸੁਅਸਤਿ ਆਥਿ ਬਾਣੀ ਬਰਮਾਉ।। ਸਤਿ ਸੁਹਾਣੁ ਸਦਾ ਮਨਿ ਚਾਉ।। ਕਵਣੁ ਸੁ ਵੇਲਾ ਵਖਤੁ ਕਵਣੁ ਕਵਣ ਥਿਤਿ ਕਵਣੁ ਵਾਰੁ।। ਕਵਣਿ ਸਿ ਰੁਤੀ ਮਾਹੁ ਕਵਣੁ ਜਿਤੁ ਹੋਆ ਆਕਾਰੁ।। ਵੇਲ ਨ ਪਾਈਆ ਪੰਡਤੀ ਜਿ ਹੋਵੈ ਲੇਖੁ ਪੁਰਾਣੁ।। ਵਖਤੁ ਨ ਪਾਇਓ ਕਾਦੀਆ ਜਿ ਲਿਖਨਿ ਲੇਖੁ ਕੁਰਾਣੁ।। ਥਿਤਿ ਵਾਰੁ ਨਾ ਜੋਗੀ ਜਾਣੈ ਰੁਤਿ ਮਾਹੁ ਨਾ ਕੋਈ।। ਜਾ ਕਰਤਾ ਸਿਰਠੀ ਕਉ ਸਾਜੇ ਆਪੇ ਜਾਣੈ ਸੋਈ।। ਕਿਵ ਕਰਿ ਆਖਾ ਕਿਵ ਸਾਲਾਹੀ ਕਿਉ ਵਰਨੀ ਕਿਵ ਜਾਣਾ।। ਨਾਨਕ ਆਖਣਿ ਸਭੁ ਕੋ ਆਖੈ ਇਕ ਦੂ ਇਕੁ ਸਿਆਣਾ।। ਵਡਾ ਸਾਹਿਬੁ ਵਡੀ ਨਾਈ ਕੀਤਾ ਜਾਕਾ ਹੋਵੈ।। ਨਾਨਕ ਜੇ ਕੋ ਆਪੌ ਜਾਣੈ ਅਗੈ ਗਇਆ ਨ ਸੋਹੈ* **।। ੨੧।।**

*୨୧--- ତୀରଥୁ ତପୁ ଦଇଆ ଦତୁ ଦାନୁ । । ଜେ କୋ ପାୱୈ ତିଲ କା ମାନୁ । । ସୁଣିଆ ମଂନିଆ ମନି କୀତା ଭାଉ । । ଅଂତରଗତି ତୀରଥି ମଲି ନାଉ । । ସଭି ଗୁଣ ତେରେ ମୈ ନାହୀ କୋଇ । । ୱିଣୁ ଗୁଣ କୀତେ ଭଗତି ନ ହୋଇ । । ସୁଅସତି ଆଥି ବାଣୀ ବରମାଉ । । ସତି ସୁହାଣୁ ସଦା ମନି ଚାଉ । । କୱଣୁ ସୁ ୱେଲା ୱଖତୁ କୱଣୁ କୱଣ*

*ଥିତି କୱଣୁ ୱାରୁ । ।  କୱଣି ସି ରୁତୀ ମାହୁ କୱଣୁ ଜିତୁ ହୋଆ ଆକାରୁ । । ୱେଲ ନ ପାଇଆ ପଂଡତୀ ଜି ହୋୱୈ ଲେଖୁ ପୁରାଣୁ । । ୱଖତୁ ନ ପାଇଓ କାଦୀଆ ଜି ଲିଖନି ଲେଖୁ କୁରାଣୁ । । ଥିତି ୱାରୁ ନା ଜୋଗୀ ଜାଣୈ ରୁତି ମାହୁ ନା କୋଈ । । ଜା କରତା ସିରଠୀ କଉ ସାଜେ ଆପେ ଜାଣୈ ସୋଈ । । କିୱ କରି ଆଖା କିୱ ସାଲାହୀ କିଉ ୱରନୀ କିୱ ଜାଣା । । ନାନକ ଆଖଣି ସଭୁ କୋ ଆଖୈ ଇକ ଦୂ ଇକୁ ସିଆଣା । । ୱଡା ସାହିବୁ ୱଡୀ ନାଈ କୀତା ଜାକା ହୋୱୈ । । ନାନକ ଜେ କୋ ଆପୌ ଜାଣୈ ଅଗୈ ଗଈଆ ନ ସୋହୈ* ***। । ୨୧ । ।***

ତୀର୍ଥସ୍ନାନ କରି ଦୟାଗୁଣ ଧରି , ତପ କରି ଯଦି କରେ କେ ଦାନ ।
ପୂଣ୍ୟ ସାରି ସ୍ୱର୍ଗୁ ଫେରିବାକୁ ହୁଏ , ସେ ପୂଣ୍ୟ ଅଟଇ ତିଳ ସମାନ । ।
ଶୁଣି ପ୍ରଭୁନାମ ବିଶ୍ୱାସ କରି ଯେ , ଏକାଗ୍ର ଚିତ୍ତରେ  କରଇ ଧ୍ୟାନ ।
ଅନ୍ତରର ନାମତୀର୍ଥ-ସରୋବରେ ,  ହୁଅଇ ନିର୍ମଳ କରି ସେ ସ୍ନାନ । ।
ଗୁଣ ଯେତେ ସବୁ ଅଟଇ ତୋହର , ଗୁଣ ବୋଲି ମୋର କିଛି ତ ନାହିଁ ।
ମୋ ହୃଦୟେ ତୋର ଗୁଣ ନ ଦେଲେ ତୁ ,  ଭକତି ତୋହର କରି ନୁହଇ । ।
ତୁହି ସ୍ୱୟଂ ମାୟା, ବାଣୀ-ବ୍ରହ୍ମା ତୁହି , ତୋହଠାରୁ କେହି ନୁହଇ ଭିନ୍ନ ।
ତୁ ସଚ୍ଚିଦାନନ୍ଦ ଅଟଳ ସୁନ୍ଦର , ସଦା ସଦା ତୋତେ ମୋର ପ୍ରଣାମ । ।
ଥିଲା କେଉଁ ବେଳା ଥିଲାକି ସମୟ , ଥିଲା କେଉଁ ତିଥି କେବଣ ବାର
ଥିଲା କେଉଁ ଋତୁ ଆଉ କେଉଁ ମାସ , ଯେବେ ରୂପ ନେଲା ଏଇ ସଂସାର । ।
ଜାଣି ନ ପାରିଲେ ପଣ୍ଡିତ ସେ ବେଳା ,  ଜାଣିଥିଲେ ଲେଖିଥାନ୍ତେ ପୁରାଣ ।
ବଖତ ନ ପାଇ ରହିଗଲେ କାଜି ,  ଲେଖିଥାନ୍ତେ ଆଉ ଏକ କୋରାଣ । ।
ଯୋଗୀ ଜାଣେ ନାହିଁ ତିଥି ଆଉ ବାର , ଋତୁ ଅବା ମାସ ନ ଜାଣେ କେହି ।
ଯେଉଁ କର୍ତ୍ତା ସୃଷ୍ଟି କରିଛି ରଚନା ,  ସବୁ ତଥ୍ୟ ଏକା ଜାଣଇ ସେହି । ।
କିଏ ତା ମହିମା ଜାଣିବ କହିବ ,  କରିବ ତାହାର ସ୍ତୁତି କିପରି ।
ସିହାଣିଆ ସିନା ସଭିଏଁ ନାନକ , କହିବାକୁ ଏକୁ ଆରେକ ବଳି । ।
ସେ ବଡ଼ ସାହେବ ବଡ଼ ତାର ନାଆଁ , କରେ ଯାହା ସିଏ ତାହା ହୁଅଇ
ଜ୍ଞାନୀ ବୋଲି ମିଛେ କଲେ କେ ଗୁମାନ , ଆଗକୁ ଶୋଭା ସେ ପାଇବ ନାହିଁ । ।**୨୧** । ।

*੨੨--- ਪਾਤਾਲਾ ਪਾਤਾਲ ਲਖ ਆਗਾਸਾ ਆਗਾਸ।। ਓੜਕ ਓੜਕ ਭਾਲਿ ਥਕੇ ਵੇਦ ਕਹਨਿ ਇਕ ਵਾਤ।।ਸਹਸ ਅਠਾਰਹ ਕਹਨਿ ਕਤੇਬਾ ਅਸੁਲੂ ਇਕੁ ਧਾਤੁ।। ਲੇਖਾ ਹੋਇ ਤ ਲਿਖੀਐ ਲੇਖੈ ਹੋਇ ਵਿਣਾਸੁ।। ਨਾਨਕ ਵਡਾ ਆਖੀਐ ਆਪੇ ਜਾਣੈ ਆਪੁ।।* ***੨੨।।***

*୨୨--- ପାତାଲା ପାତାଲ ଲଖ ଆଗାସା ଆଗାସ । । ଓଡ଼କ ଓଡ଼କ ଭାଲି ଥକେ ୱେଦ କହନି ଇକ ୱାତ । ।ସହସ ଅଠାରହ କହନି କତେବା ଅସୁଲୁ ଇକୁ ଧାତୁ । । ଲେଖା ହୋଇ ତା ଲିଖୀଐ ଲେଖୈ ହୋଇ ୱିଣାସୁ । । ନାନକ ୱଡା ଆଖୀଐ ଆପେ ଜାଣୈ ଆପୁ* ***। । ୨୨ । ।***

ପାତାଳର ତଳେ ପାତାଳ ରହିଛି , ଲକ୍ଷ ଲକ୍ଷ ଲକ୍ଷ କେତେ କେ ଜାଣି ।
ଆକାଶ ଉପରେ ରହିଛି ଆକାଶ , କେତେ ଲକ୍ଷ କିଏ ପାରିବ ଗଣି । ।
"ଖୋଜି ଥକିଗଲୁ ଅନ୍ତ ନ ପାଇଲୁ" , କହୁଛନ୍ତି ବେଦ ଏକଇ ସ୍ୱରେ ।
'ଅଠର ସହସ୍ର' *କିତାପ* କହନ୍ତି , ସେଇ ଏକ ପ୍ରଭୁ ସବୁରି ମୂଳେ । ।
ଗଣନାର ଶେଷ ହୋଇ ଯିବ ସିନା , କଳନା ତାହାର କରି ନୁହଇ ।
ନାନକ କର ତୁ ଯଶୋଗାନ ତାର , ଯା ରହସ୍ୟ ଆପେ ଯିଏ ଜାଣଇ । ।୨୨ । ।

*(( କିତାପ :- କିତାବ୍- ଖ୍ରୀଷ୍ଟୀୟ ମତ ଓ ଇସ୍‌ଲାମ ଆଦିର ଚାରି ମୂଳ ଧର୍ମଗ୍ରନ୍ଥ କୋରାଣ, ଅଂଜୀଲ୍, ତୌରରେତ୍, ଓ ଜଂବୁର ଅନୁସାରେ ସୃଷ୍ଟିର ଅଠର ସହସ୍ର, ଅଂଶ ଅଛି , ସବୁରି ଆରମ୍ଭ ସେହି ଏକ ପ୍ରଭୁଠାରୁ ହିଁ ହୋଇଅଛି ।))*

*੨੩--- ਸਾਲਾਹੀ ਸਾਲਾਹਿ ਏਤੀ ਸੁਰਤਿ ਨ ਪਾਈਆ।। ਨਦੀਆ ਅਤੈ ਵਾਹ ਪਵਹਿ ਸਮੁੰਦਿ ਨ ਜਾਣੀਅਹਿ।। ਸਮੁੰਦ ਸਾਹ ਸੁਲਤਾਨ ਗਿਰਹਾ ਸੇਤੀ ਮਾਲੁ ਧਨੁ।। ਕੀੜੀ ਤੁਲਿ ਨ ਹੋਵਨੀ ਜੇ ਤਿਸੁ ਮਨਹੁ ਨ ਵੀਸਰਹਿ।।***੨੩।।***

*୨୩--- ସାଲାହୀ ସାଲାହି ଏତୀ ସୁରତି ନ ପାଇଆ । । ନଦୀଆ ଅତୈ ୱାହ ପୱହି ସମୁଂଦି ନ ଜାଣୀଅହି । । ସମୁଂଦ ସାହ ସୁଲତାନ ଗିରହା ସେତୀ ମାଲୁ ଧନୁ । । କୀଡ଼ୀ ତୁଲି ନ ହୋୱନୀ ଜେ ତିସୁ ମନହୁ ନ ୱୀସରହି* ***। ।୨୩ । ।***

ସ୍ତୁତି କରି ଭକ୍ତ ବ୍ରହ୍ମ ଲୀନ ହୁଏ , ପାଏ ନାହିଁ କେବେ ଅନ୍ତ ତାହାର,
ନଦୀ ନାଳ ଯଥା ସାଗରେ ମିଶନ୍ତି , ଜାଣି ନ ପାରନ୍ତି ତାର ବିସ୍ତାର । ।
ସମୁଦ୍ରର ସ୍ୱାମୀ ସମ୍ରାଟ ଯେ ଅଟେ , ଗିରିତୁଲ ଧନ ଯାହାର ଥାଇ,
ସେଇ କୀଟ ତୁଲ ହୋଇବ, କାହୁଁ ଯେ , ପ୍ରଭୁକୁ ମନରୁ ପାଶୋରେ ନାହିଁ । ।୨୩ । ।

੨੪--- ਅੰਤੁ ਨ ਸਿਫਤੀ ਕਹਣਿ ਨ ਅੰਤੁ॥ ਅੰਤੁ ਨ ਕਰਣੈ ਦੇਣਿ ਨ ਅੰਤੁ॥ ਅੰਤੁ ਨ ਵੇਖਣਿ ਸੁਣਣਿ ਨ ਅੰਤੁ॥ ਅੰਤੁ ਨ ਜਾਪੈ ਕਿਆ ਮਨਿ ਮੰਤੁ॥ ਅੰਤੁ ਨ ਜਾਪੈ ਕੀਤਾ ਆਕਾਰੁ॥ ਅੰਤੁ ਨ ਜਾਪੈ ਪਾਰਾਵਾਰੁ॥ ਅੰਤ ਕਾਰਣਿ ਕੇਤੇ ਬਿਲਲਾਹਿ॥ ਤਾ ਕੇ ਅੰਤ ਨ ਪਾਏ ਜਾਹਿ॥ ਏਹੁ ਅੰਤੁ ਨ ਜਾਣੈ ਕੋਇ॥ ਬਹੁਤਾ ਕਹੀਐ ਬਹੁਤਾ ਹੋਇ ॥ ਵਡਾ ਸਾਹਿਬੁ ਊਚਾ ਥਾਉ॥ ਊਚੇ ਉਪਰਿ ਊਚਾ ਨਾਉ॥ ਏਵਡੁ ਊਚਾ ਹੋਵੈ ਕੋਇ॥ ਤਿਸੁ ਊਚੇ ਕਉ ਜਾਣੈ ਸੋਇ॥ ਜੇਵਡੁ ਆਪਿ ਜਾਣੈ ਆਪਿ ਆਪਿ॥ ਨਾਨਕ ਨਦਰੀ ਕਰਮੀ ਦਾਤਿ॥**੨੪॥**

*୨୪--- ଅଂତୁ ନ ସିଫତୀ କହଣି ନ ଅଂତୁ । । ଅଂତୁ ନ କରଣୈ ଦେଣି ନ ଅଂତୁ । । ଅଂତୁ ନ ୱେଖଣି ସୁଣଣି ନ ଅଂତୁ । । ଅଂତୁ ନ ଜାପୈ କିଆ ମନି ମଂତୁ । । ଅଂତୁ ନ ଜାପୈ କୀତା ଆକାରୁ । । ଅଂତୁ ନ ଜାପୈ ପାରାୱାରୁ । । ଅଂତ କାରଣି କେତେ ବିଲଲାହି । । ତା କେ ଅଂତ ନ ପାଏ ଜାହି । । ଏହୁ ଅଂତୁ ନ ଜାଣୈ କୋଇ । । ବହୁତା କହୀଐ ବହୁତା ହୋଇ । । ୱଡା ସାହିବୁ ଊଚା ଥାଉ । । ଊଚେ ଉପରି ଊଚା ନାଉ । । ଏୱଡୁ ଊଚା ହୋୱୈ କୋଇ । । ତିସୁ ଊଚେ କଉ ଜାଣୈ ସୋଇ । । ଜେୱଡୁ ଆପି ଜାଣୈ ଆପି ଆପି । । ନାନକ ନଦରୀ କରମୀ ଦାତି । **।୨୪ । ।***

ଅନନ୍ତ ଅଟଇ ଗୁଣ ତୋର ପ୍ରଭୁ , ସାରି ନୁହଇ ତା ମୁଖରେ କହି ।
ଅନନ୍ତ ଅଟଇ ରଚନା ତୋହର , ତୋ ଦାନର ଅନ୍ତ ପାଇ ନୁହଇ । ।
ଅନନ୍ତ ତୋହର ସୃଷ୍ଟିର ଦର୍ଶନ , ଅନ୍ତ ନ ମିଳଇ କଲେ ଶ୍ରବଣ ।
କିସ ଇଛା ତୋର କି କରିବା ଚାହୁଁ , ବୁଝି ନ ହୁଅଇ ତୋହର ମନ । ।
ଅନ୍ତ ନ ମିଳଇ ତୋହର ସୃଷ୍ଟିର , ଦେଇ ଅଛୁ ତୁହି କେଡ଼େ ଆକାର ।
କେତେ ବଡ଼ କରି ଗଡ଼ିଛୁ ସଂସାର , ନ ମିଳଇ କାହିଁ ତା ପାରାବାର । ।
କେତେ ହେଉଛନ୍ତି କଲବଲ ଆହା , ଅନ୍ତ କୁ ତୋହର ପାଇବା ପାଇଁ ।
କେ କେତେ ଯତନ କରୁଛନ୍ତି ଆହା , ଅନ୍ତ କାହିଁ ତୋର ମିଳୁ ତ ନାହିଁ । ।
ତୋହର ଅନ୍ତ କେ ନ ଜାଣଇ ପ୍ରଭୁ , ଥଳକୂଳ ତୋର ମିଳଇ ନାହିଁ ।
ବହୁତ କହିଲେ ବହୁତ ହୁଅଇ , ସରେ ନାହିଁ କେବେ ତୋର ବଡ଼ାଇ । ।
ତୁ ବଡ଼ ସାହିବ ପରଂବ୍ରହ୍ମ ପ୍ରଭୁ , ବଡ଼ତ ଅଟଇ ତୋର ଅସ୍ଥାନ ।
ତୋ ନାମ ମହିମା କି କହିବି ପ୍ରଭୁ , ମହାରୁ-ମହାନ ତୋହର ନାମ । ।
ଏତେ ଉଚ୍ଚ ଭଲା ହୋଇ କେ ପାରିବ , ତୋହରି ଉଚ୍ଚତା ମାପିବ କିଏ ।
ତୋହଠାରୁ ଉଚ୍ଚ ହୋଇ ଯେ ପାରିବ , ତୋହରି ଉଚ୍ଚତା ଜାଣିବ ସିଏ । ।

କେତେ ବଡ଼ ତୁହି ଆଉ କେ ଜାଣିବ , ତୋତେ ଏକା ଜଣା ତୋର ବଡ଼ାଇ ।
କହଇ ନାନକ ତୋ କୃପା ଦୃଷ୍ଟିରୁ , ଦାନରେ କରୁଣା ଦୟା ମିଳଇ ।।**୨୪**।।

*੨੫--- ਬਹੁਤਾ ਕਰਮੁ ਲਿਖਿਆ ਨਾ ਜਾਇ।। ਵਡਾ ਦਾਤਾ ਤਿਲੁ ਨ ਤਮਾਇ।। ਕੇਤੇ ਮੰਗਹਿ ਜੋਧ ਅਪਾਰ।। ਕੇਤਿਆ ਗਣਤ ਨਹੀ ਵੀਚਾਰੁ।। ਕੇਤੇ ਖਪਿ ਤੁਟਹਿ ਵੇਕਾਰ।। ਕੇਤੇ ਲੈ ਲੈ ਮੁਕਰੁ ਪਾਹਿ।। ਕੇਤੇ ਮੂਰਖ ਖਾਹੀ ਖਾਹਿ।। ਕੇਤਿਆ ਦੂਖ ਭੂਖ ਸਦ ਮਾਰ।। ਏਹਿ ਭਿ ਦਾਤਿ ਤੇਰੀ ਦਾਤਾਰ।। ਬੰਦਿ ਖਲਾਸੀ ਭਾਣੈ ਹੋਇ।। ਹੋਰੁ ਆਖਿ ਨ ਸਕੈ ਕੋਇ।। ਜੇ ਕੋ ਖਾਇਕੁ ਆਖਣਿ ਪਾਇ।। ਓਹੁ ਜਾਣੈ ਜੇਤੀਆ ਮੁਹਿ ਖਾਇ।। ਆਪੇ ਜਾਣੈ ਆਪੇ ਦੇਇ।। ਆਖਹਿ ਸਿ ਭਿ ਕੇਈ ਕੇਇ।। ਜਿਸ ਨੋ ਬਖਸੇ ਸਿਫਤਿ ਸਾਲਾਹ।। ਨਾਨਕ ਪਾਤਿਸਾਹੀ ਪਾਤਿਸਾਹੁ**।।੨੫।।***

*୨୫--- ବହୁତା କରମୁ ଲିଖିଆ ନା ଜାଇ ।। ୱଡା ଦାତା ତିଲୁ ନ ତମାଇ ।। କେତେ ମଂଗହି ଜୋଧ ଅପାର ।। କେତିଆ ଗଣତ ନହୀ ୱୀଚାରୁ ।। କେତେ ଖପି ତୁଟହି ୱେକାର ।। କେତେ ଲୈ ଲୈ ମୁକରୁ ପାହି ।। କେତେ ମୂରଖ ଖାହୀ ଖାହି ।। କେତିଆ ଦୂଖ ଭୂଖ ସଦ ମାର ।। ଏହି ଭୀ ଦାତି ତେରୀ ଦାତାର ।। ବଂଦି ଖଲାସୀ ଭାଣୈ ହୋଇ ।। ହୋରୁ ଆଖି ନ ସକୈ କୋଇ ।। ଜେ କୋ ଖାଇକୁ ଆଖଣି ପାଇ ।। ଓହୁ ଜାଣୈ ଜେତୀଆ ମୁହି ଖାଇ ।। ଆପେ ଜାଣୈ ଆପେ ଦେଇ ।। ଆଖହି ସି ଭି କେଈ କେଇ ।। ଜିସ ନୋ ବଖସେ ସିଫତି ସାଲାହ ।। ନାନକ ପାତିସାହୀ ପାତିସାହୁ **।।୨୫।।***

ବହୁତ ତୋହର କୃପା ଦୃଷ୍ଟି ପ୍ରଭୁ , ତୋ କରୁଣା ଲେଖା କରି ନୁହଇ ।
ତିଳେ ତୋର ଲୋଭ ନାହିଁ ବଡ଼ଦାତା , ପ୍ରତିଦାନେ କିଛି ନ ଚାହୁଁ ତୁହି ।।
କେତେ କେତେ କେତେ ଯୋଦ୍ଧା ଶୂର ବୀର, ମାଗୁଛନ୍ତି ତୋତେ ହାତ ପସାରି ।
କେତେ ଯେ ଭିକାରି ତୋହର ଦୁଆରେ , ତା ଗଣନା କିଏ ପାରିବ କରି ।।
ବହୁତ ଦୁର୍ଭାଗା ବହୁତ କୁକର୍ମୀ , ଅଗଣିତ ପାପୀ ସୃଷ୍ଟିରେ ଛନ୍ତି ।
ତୋର ଆଶୀର୍ୱାଦ ପାପକର୍ମେ ଦେଇ , ବିଷୟ ବିକାରେ ମରନ୍ତି ନିତି ।।
ଅନେକ କୃତଘ୍ନ ପାଇ ତୋର ଦାନ , ମଣନ୍ତି ଆପଣା ଅର୍ଜିତ ଧନ ।
କେତେ କେତେ ମୂର୍ଖ ଖାଆନ୍ତି ମଉଜେ , କେବେ ନ କରନ୍ତି ତୋ ଗୁଣ ଗାନ ।।
ଛନ୍ତି କେତେ କେତେ ଏ ତୋର ଜଗତେ , ପାଇ ସଦା ଦୁଃଖ କ୍ଷୁଧା ଆଘାତ ।
ଦୁଃଖ କ୍ଷୁଧା ମଧ୍ୟ ଦାନ ତୋର ଦାତା , ଏଥି ଲାଗି ରହେ ତୋ’ ଠାରେ ଚିତ୍ତ ।।

ମାୟା ମୋହ ରୂପୀ ବନ୍ଧନରୁ ମୁକ୍ତି , ମିଳିଥାଇ ପ୍ରଭୁ ତୋର ଇଛାରେ ।
ତୋର ଇଛା ବିନୁ କହିତ ନୁହଇ , ମୁକ୍ତି ମିଳେ ଆଉ କେଉଁ ପ୍ରକାରେ ।।
ମୂର୍ଖପଣେ କିଏ କହେ ଯଦି କେବେ , ଅଛି ବୋଲି ଆଉ ମୁକତି ପଥ ।
ଆପେ ସିଏ ଜାଣେ ମୂର୍ଖପଣ ପାଇଁ , ଖାଏ ସିଏ କେତେ ମୁଖେ ଆଘାତ ।।
କି ଲୋଡ଼ା କାହାକୁ ଜାଣୁ ତୁହି ପ୍ରଭୁ , ଦେଉ ସବୁ କିଛି ହୃଦୟ ଜାଣି ।
ଛନ୍ତି ଅଗଣିତ ଏ ଜଗତେ ତୋର , କହୁଥାନ୍ତି ଏହି କଥା ବଖାଣି ।।
ଦେଇଥାଉ ତୁହି ଶକତି ଯାହାକୁ , ଜପ କରିବାକୁ ତୋହର ନାମ ।
ନାନକ ସେ ରାଜ-ରାଜେଶ୍ୱର ତୁଲ , ସଫଳ ହୁଅଇ ତାହାର ଜନ୍ମ ।।**୨୫**।।

*੨੬--- ਅਮੁਲ ਗੁਣ ਅਮੁਲ ਵਾਪਾਰ।। ਅਮੁਲ ਵਾਪਾਰੀਏ ਅਮੁਲ ਭੰਡਾਰ।। ਅਮੁਲ ਆਵਹਿ ਅਮੁਲ ਲੈ ਜਾਹਿ।। ਅਮੁਲ ਭਾਇ ਅਮੁਲਾ ਸਮਾਹਿ ।। ਅਮੁਲੁ ਧਰਮੁ ਅਮੁਲੁ ਦੀਬਾਣੁ।। ਅਮੁਲੁ ਤੁਲੁ ਅਮੁਲੁ ਪਰਵਾਣੁ।। ਅਮੁਲੁ ਬਖਸੀਸ ਅਮੁਲੁ ਨੀਸਾਣੁ।। ਅਮੁਲੁ ਕਰਮੁ ਅਮੁਲੁ ਫੁਰਮਾਣੁ।। ਅਮੁਲੋ ਅਮੁਲੁ ਆਖਿਆ ਨ ਜਾਇ।। ਆਖਿ ਆਖਿ ਰਹੇ ਲਿਵ ਲਾਇ।। ਆਖਹਿ ਵੇਦ ਪਾਠ ਪੁਰਾਣ।। ਆਖਹਿ ਪੜੇ ਕਰਹਿ ਵਖਿਆਣ।। ਆਖਹਿ ਬਰਮੇ ਆਖਹਿ ਇੰਦ।। ਆਖਹਿ ਗੋਪੀ ਤੈ ਗੋਵਿੰਦ।। ਆਖਹਿ ਈਸਰ ਆਖਹਿ ਸਿਧ।। ਆਖਹਿ ਕੇਤੇ ਕੀਤੇ ਬੁਧ।। ਆਖਹਿ ਦਾਨਵ ਆਖਹਿ ਦੇਵ।। ਆਖਹਿ ਸੁਰਿ ਨਰ ਮੁਨਿ ਜਨ ਸੇਵ।। ਕੇਤੇ ਆਖਹਿ ਆਖਣਿ ਪਾਹਿ।। ਕੇਤੇ ਕਹਿ ਕਹਿ ਉਠਿ ਉਠਿ ਜਾਹਿ।। ਏਤੇ ਕੀਤੇ ਹੋਰਿ ਕਰੇਹਿ।। ਤਾ ਆਖਿ ਨ ਸਕਹਿ ਕੇਈ ਕੇਇ।। ਜੇਵਡੁ ਭਾਵੈ ਤੇਵਡੁ ਹੋਇ।। ਨਾਨਕ ਜਾਣੈ ਸਾਚਾ ਸੋਇ।। ਜੇ ਕੋ ਆਖੈ ਬੋਲੁ ਵਿਗਾੜੁ।। ਤਾ ਲਿਖੀਐ ਸਿਰਿ ਗਾਵਾਰਾ ਗਾਵਾਰੁ**।।੨੬।।***

*୨୬--- ଅମୁଲ ଗୁଣ ଅମୁଲ ୱାପାର ।। ଅମୁଲ ୱାପାରୀଏ ଅମୁଲ ଭଂଡାର ।। ଅମୁଲ ଆୱହି ଅମୁଲ ଲୈ ଜାହି ।। ଅମୁଲ ଭାଇ ଅମୁଲା ସମାହି ।। ଅମୁଲୁ ଧରମୁ ଅମୁଲୁ ଦୀବାଣୁ ।। ଅମୁଲୁ ତୁଲୁ ଅମୁଲୁ ପରୱାଣୁ ।। ଅମୁଲୁ ବଖସୀସ ଅମୁଲୁ ନୀସାଣୁ ।। ଅମୁଲୁ କରମୁ ଅମୁଲୁ ଫୁରମାଣୁ ।। ଅମୁଲୋ ଅମୁଲୁ ଆଖିଆ ନ ଜାଇ ।। ଆଖି ଆଖି ରହେ ଲିୱ ଲାଇ ।। ଆଖହି ୱେଦ ପାଠ ପୁରାଣ ।। ଆଖହି ପଢ଼େ କରହି ୱଖିଆଣ ।। ଆଖହି ବରମେ ଆଖହି ଇଂଦ ।। ଆଖହି ଗୋପୀ ତୈ ଗୋୱିଂଦ ।। ଆଖହି ଇସର ଆଖହି ସିଧ ।। ଆଖହି କେତେ କୀତେ ବୁଧ ।। ଆଖହି ଦାନୱ ଆଖହି ଦେୱ ।। ଆଖହି ସୁରି ନର ମୁନି ଜନ ସେୱ ।। କେତେ ଆଖହି ଆଖଣି ପାହି ।। କେତେ କହି*

*କହି ଉଠି ଉଠି ଜାହି । । ଏତେ କୀତେ ହୋରି କରେହି । । ତା ଆଖି ନ ସକହି କେଈ କେଈ । । ଜେୱଡୁ ଭାୱୈ ତେୱଡୁ ହୋଇ । । ନାନକ ଜାଣୈ ସାଚା ସୋଇ । । ଜେ କୋ ଆଖୈ ବୋଲୁ ୱିଗାଡୁ । । ତା ଲିଖିଐ ସିରି ଗାୱାରା ଗାୱାରୁ । ।୨୬ । ।*

ଅମୂଲ୍ୟ ଅଟଇ ଗୁଣ ତୋର ପ୍ରଭୁ ,  ଅମୂଲ୍ୟ ତୋହର *ଗୁଣ ବେପାର* ।
ଅମୂଲ୍ୟ ତୋହର ଗୁଣର ବେପାରୀ ,  ଅମୂଲ୍ୟ ତୋହର ଗୁଣ ଭଣ୍ଡାର  । ।
ଅମୂଲ୍ୟ ସିଏ ଯେ ଆସଇ ଏଥକୁ ,  ଅମୂଲ୍ୟ ତାହା ଯେ ଏଥୁ ନିଅଇ  ।
ଅମୂଲ୍ୟ ସିଏ ଯେ ପ୍ରଭୁ ପ୍ରେମ କରେ , ଆଉ ଯେ ପ୍ରଭୁରେ ଲୀନ ହୁଅଇ  । ।
ଅମୂଲ୍ୟ ତୋହର ନିୟମ ବିଧାନ , ଅମୂଲ୍ୟ ଅଟଇ ତୋ ଦରବାର  ।
ଅମୂଲ୍ୟ ତୁଳାରେ ତୁଳିଥାଉ ଗୁଣ , ଅମୂଲ୍ୟ ଯାହା ତୁ କରୁ ସ୍ୱୀକାର  । ।
ଅମୂଲ୍ୟ ସେ ସବୁ ଯାହା ଦେଉ ଦାନ , ଅମୂଲ୍ୟ ତୋ ଦୟା ଦୃଷ୍ଟି ନିଶାଣ  ।
ଅମୂଲ୍ୟ ସେ ସବୁ ଯାହା କରୁ କୃପା , ଅମୂଲ୍ୟ ତୋ ଆଜ୍ଞା ତୁହି ମହାନ । ।
ତୁ କେତେ ଅମୂଲ୍ୟ କହିତ ନୁହଇ ,  କେ କରି ପାରିବ ତାହା ବଖାଣ  ।
କହି କହି କେତେ ହୁଅନ୍ତି ହାଲିଆ , କହି ନ ପାରନ୍ତି କରନ୍ତି ଧ୍ୟାନ  । ।
ବର୍ଣ୍ଣନା କରନ୍ତି ତୋହର ହିଁ କଥା ,  ବହୁ ମୁଖେ ବେଦ ମନ୍ତ୍ର ପୁରାଣ  ।
ଅନେକ ବିଦ୍ୱାନ ଦେଖାଅନ୍ତି ପଥ ,  କରି କରି ତୋର ଗୁଣ ବଖାଣ  । ।
କୋଟି କୋଟି ବ୍ରହ୍ମା ତୋ ସ୍ତୁତି କରନ୍ତି ,   କୋଟି କୋଟି ଇନ୍ଦ୍ର ଗାଆନ୍ତି ଗୁଣ  ।
କେତେ କେତେ ଗୋପୀ କେତେ କେତେ କୃଷ୍ଣ ,  କରନ୍ତି ତୋହର ଗୁଣ ଗାୟନ  । ।
କେତେ କେତେ ଶିବ ତୋ ସ୍ତୁତି କରନ୍ତି ,  କେତେ କେତେ ସିଦ୍ଧ ଗାଆନ୍ତି ଗୁଣ  ।
ତୁହି ଗଢ଼ିଥିବା କେତେ କେତେ ବୁଦ୍ଧ ,  କରନ୍ତି ତୋହର ଗୁଣ ଗାୟନ  । ।
କେତେ ଯେ ଦାନବ ତୋ ସ୍ତୁତି କରନ୍ତି , କରନ୍ତି ଦେବତା ଗୁଣ ବର୍ଣ୍ଣନ  ।
କେତେ ସୁର ନର କେତେ ମୁନୀଜନ , କେତେ ଯେ ସେବକ ଗାଆନ୍ତି ଗୁଣ  । ।
କେତେ କେତେ ତୋର ଗୁଣ ବର୍ଣ୍ଣୁଛନ୍ତି ,   ବର୍ଣ୍ଣିବାକୁ କେତେ ଯତ୍ନ କରନ୍ତି  ।
କେତେ କେତେ ତୋର ଗୁଣ ବର୍ଣ୍ଣି ବର୍ଣ୍ଣି , ଏ ସଂସାରୁ ଉଠି ଚାଲି ଯାଆନ୍ତି  । ।
ଯେତିକି ଯତନ କରି ସାରିଛନ୍ତି ,  ଆହୁରି ସେତିକି କଲେ ଯତନ  ।
କେବେ ବି କେହି ବି କରି ନ ପାରିବ , ପୂର୍ଣ୍ଣ ରୂପେ ତୋର ଗୁଣ ବର୍ଣ୍ଣନ  । ।
ଯେତେ ବଡ଼ ଚାହୁଁ ସେତେ ବଡ଼ ହେଉ , ମହିମା ତୋହର ସେତେ ବଢ଼ଇ  ।
କହଇ ନାନକ ସଚ୍ଚା ୱାହିଗୁରୁ , ତୋତେ ଏକା ଜଣା ତୋର ବଡ଼ାଇ  । ।

ପୂର୍ଣ୍ଣରୂପେ ତୋତେ ଜାଣେ ବୋଲି ଯଦି , କେଉଁ ବାହାପିଆ ବହପ କରେ ।
ଗଣନା କରିବା ହୋଇବ ଉଚିତ , ମୂର୍ଖ ବୋଲି ତାକୁ ମୂର୍ଖ ମଧ୍ୟରେ ।।୨୬।।
*(( ଗୁଣ ବେପାର :- ଗୁଣର ଆଚରଣ, ଆଚାର ବ୍ୟବହାର ))*

੨੭--- *ਸੋ ਦਰੁ ਕੇਹਾ ਸੋ ਘਰੁ ਕੇਹਾ ਜਿਤੁ ਬਹਿ ਸਰਬ ਸਮਾਲੇ।। ਵਾਜੇ ਨਾਦੁ ਅਨੇਕ ਅਸੰਖਾ ਕੇਤੇ ਵਾਵਣਹਾਰੇ।। ਕੇਤੇ ਰਾਗ ਪਰੀ ਸਿਉ ਕਹੀਅਨਿ ਕੇਤੇ ਗਾਵਣਹਾਰੇ।। ਗਾਵਹਿ ਤੁਹਨੋ ਪਉਣੁ ਪਾਣੀ ਬੈਸੰਤਰੁ ਗਾਵੈ ਰਾਜਾ ਧਰਮੁ ਦੁਆਰੇ।। ਗਾਵਹਿ ਚਿਤੁ ਗੁਪਤੁ ਲਿਖਿ ਜਾਣਹਿ ਲਿਖਿ ਲਿਖਿ ਧਰਮੁ ਵੀਚਾਰੇ।। ਗਾਵਹਿ ਈਸਰੁ ਬਰਮਾ ਦੇਵੀ ਸੋਹਨਿ ਸਦਾ ਸਵਾਰੇ।। ਗਾਵਹਿ ਇੰਦ ਇਦਾਸਣਿ ਬੈਠੇ ਦੇਵਤਿਆ ਦਰਿ ਨਾਲੇ।। ਗਾਵਹਿ ਸਿਧ ਸਮਾਧੀ ਅੰਦਰਿ ਗਾਵਨਿ ਸਾਧ ਵਿਚਾਰੇ।। ਗਾਵਨਿ ਜਤੀ ਸਤੀ ਸੰਤੋਖੀ ਗਾਵਹਿ ਵੀਰ ਕਰਾਰੇ।। ਗਾਵਨਿ ਪੰਡਿਤ ਪੜਨਿ ਰਖੀਸਰ ਜੁਗੁ ਜੁਗੁ ਵੇਦਾ ਨਾਲੇ।। ਗਾਵਹਿ ਮੋਹਣੀਆ ਮਨੁ ਮੋਹਨਿ ਸੁਰਗਾ ਮਛ ਪਇਆਲੇ।। ਗਾਵਨਿ ਰਤਨ ਉਪਾਏ ਤੇਰੇ ਅਠਸਠਿ ਤੀਰਥ ਨਾਲੇ।। ਗਾਵਹਿ ਜੋਧ ਮਹਾਬਲ ਸੂਰਾ ਗਾਵਹਿ ਖਾਣੀ ਚਾਰੇ।। ਗਾਵਹਿ ਖੰਡ ਮੰਡਲ ਵਰਭੰਡਾ ਕਰਿ ਕਰਿ ਰਖੇ ਧਾਰੇ।। ਸੇਈ ਤੁਧੁਨੋ ਗਾਵਹਿ ਜੋ ਤੁਧੁ ਭਾਵਨਿ ਰਤੇ ਤੇਰੇ ਭਗਤ ਰਸਾਲੇ।। ਹੋਰਿ ਕੇਤੇ ਗਾਵਨਿ ਸੇ ਮੈ ਚਿਤਿ ਨ ਆਵਨਿ ਨਾਨਕੁ ਕਿਆ ਵੀਚਾਰੇ।। ਸੋਈ ਸੋਈ ਸਦਾ ਸਚੁ ਸਾਹਿਬੁ ਸਾਚਾ ਸਾਚੀ ਨਾਈ।। ਹੈ ਭੀ ਹੋਸੀ ਜਾਇ ਨ ਜਾਸੀ ਰਚਨਾ ਜਿਨਿ ਰਚਾਈ।। ਰੰਗੀ ਰੰਗੀ ਭਾਤੀ ਕਰਿ ਕਰਿ ਜਿਨਸੀ ਮਾਇਆ ਜਿਨਿ ਉਪਾਈ।। ਕਰਿ ਕਰਿ ਵੇਖੈ ਕੀਤਾ ਆਪਣਾ ਜਿਵ ਤਿਸ ਦੀ ਵਡਿਆਈ।। ਜੋ ਤਿਸੁ ਭਾਵੈ ਸੋਈ ਕਰਸੀ ਹੁਕਮੁ ਨ ਕਰਣਾ ਜਾਈ।। ਸੋ ਪਾਤਿਸਾਹੁ ਸਾਹਾ ਪਾਤਿਸਾਹਿਬੁ ਨਾਨਕ ਰਹਣੁ ਰਜਾਈ।।੨੭।।*

୨୭--- *ସୋ ଦରୁ କେହା ସୋ ଘରୁ କେହା ଜିତୁ ବହି ସରବ ସମାଲେ ।। ୱାଜେ ନାଦୁ ଅନେକ ଅସଂଖା କେତେ ୱାୱଣହାରେ ।। କେତେ ରାଗ ପରୀ ସିଉ କହୀଅନି କେତେ ଗାୱଣହାରେ ।। ଗାୱହି ତୁହନୋ ପଉଣୁ ପାଣୀ ବୈସଂତରୁ ଗାୱୈ ରାଜା ଧରମୁ ଦୁଆରେ ।। ଗାୱହି ଚିତୁ ଗୁପତୁ ଲିଖି ଜାଣହି ଲିଖି ଲିଖି ଧରମୁ ୱୀଚାରେ ।। ଗାୱହି ଇସରୁ ବରମା ଦେୱୀ ସୋହନି ସଦା ସୱାରେ ।। ଗାୱହି ଇଂଦ ଇଦାସଣି ବୈଠେ ଦେୱତିଆ ଦରି ନାଲେ ।। ଗାୱହି ସିଧ ସମାଧୀ ଅଂଦରି ଗାୱନି ସାଧ ୱିଚାରେ ।। ଗାୱନି ଜତୀ ସତୀ ସଂତୋଖୀ ଗାୱହି ୱୀର କରାରେ ।। ଗାୱନି ପଂଡିତ ପଢ଼ନି ରଖୀସର ଜୁଗୁ ଜୁଗୁ ୱେଦା ନାଲେ ।। ଗାୱହି ମୋହଣୀଆ ମନୁ ମୋହନି ସୁରଗା ମଛ ପଇଆଲେ ।। ଗାୱନି ରତନ ଉପାଏ ତେରେ ଅଠସଠି ତୀରଥ ନାଲେ ।। ଗାୱହି*

*ଜୋଧ ମହାବଲ ସୂରା ଗାଓହି ଖାଣୀ ଚାରେ । । ଗାଓହି ଖଂଡ ମଂଡଲ ୱରଭଂଡା କରି କରି ରଖେ ଧାରେ । । ସେଇ ତୁଧୁନୋ ଗାଓହି ଜୋ ତୁଧୁ ଭାୱନି ରତେ ତେରେ ଭଗତ ରସାଲେ । । ହୋରି କେତେ ଗାୱନି ସେ ମୈ ଚିତି ନ ଆୱନି ନାନକୁ କିଆ ୱୀଚାରେ । । ସୋଇ ସୋଇ ସଦା ସଚୁ ସାହିବୁ ସାଚା ସାଚୀ ନାଈ । । ହୈ ଭୀ ହୋସୀ ଜାଇ ନ ଜାସୀ ରଚନା ଜିନି ରଚାଈ । । ରଂଗୀ ରଂଗୀ ଭାତୀ କରି କରି ଜିନସୀ ମାଇଆ ଜିନି ଉପାଈ । । କରି କରି ୱେଖୈ କୀତା ଆପଣା ଜିୱ ତିସ ଦୀ ୱଡିଆଈ । । ଜୋ ତିସୁ ଭାୱୈ ସୋଈ କରସୀ ହୁକମୁ ନ କରଣା ଜାଈ । । ସୋ ପାତିସାହୁ ସାହା ପାତିସାହିବୁ ନାନକ ରହଣୁ ରଜାଈ* **। ।୨୭ । ।**

ଯହିଁ ବସି ତୁହି ସୃଷ୍ଟିକି ସମ୍ଭାଳୁ , କେଉଁ ପରି ଆହା ସେ ଘରଦ୍ୱାର ।
କେତେ ବାଦ୍ୟକାର ବଜାଅନ୍ତି ବାଦ୍ୟ , ଶୁଭୁଥାଇ ଯହିଁ ଅସଂଖ୍ୟ ସ୍ୱର । ।
କେତେ ଗାନକାରୀ ଗାଉଛନ୍ତି ନାମ , ରାଗ ରାଗିଣୀ ସୁମଧୁର ସୁରେ ।
ବାୟୁ ଅଗ୍ନି ଜଳ ଗାଉଛନ୍ତି ଯଶ , ଗାଏ ଧର୍ମରାଜ ତୋର ଦୁଆରେ । ।
ଗାଉଛନ୍ତି ଚିତ୍ରଗୁପ୍ତ ଲେଖା *ଲେଖି* , ଲେଖି କରୁ ଅଛି ଧର୍ମ ବିଚାର ।
ତୁହି ଗଢ଼ିଥିବା ଶିବ ବ୍ରହ୍ମା ଦେବୀ , ଗାଉଛନ୍ତି ସଦା ସ୍ତୁତି ତୋହର । ।
ଇନ୍ଦ୍ରାସନେ ବସି ଇନ୍ଦ୍ର ଗାଉ ଅଛି , ଦେବଗଣ ସଙ୍ଗେ ଯଶ ତୋହରି ।
ଗାଉଛନ୍ତି ସିଦ୍ଧ ସମାଧୀ ଭିତରେ , ଗାଉଛନ୍ତି ସାଧୁ ବିଚାର କରି । ।
ଗାଉଛନ୍ତି ଯଶ ଯତି ଆଉ ଦାନୀ , ସନ୍ତୋଷ ଆବର ମହାନ ବୀର ।
ଗାଉଛନ୍ତି ସ୍ତୁତି ଯୁଗ ଯୁଗ ଧରି , ବେଦ ସଙ୍ଗେ କେତେ ଋଷି ପ୍ରବର । ।
ଗାଉଛନ୍ତି ସ୍ତୁତି ସ୍ୱର୍ଗ ମର୍ତ୍ତ୍ୟ ଆଉ , ପାତାଳ ପୁରୀର ସୁନ୍ଦର ନାରୀ ।
ଅଠଷଠି ତୀର୍ଥ ଚଉଦ ରତନ , ଗାଉଛନ୍ତି ସଦା ଯଶ ତୋହରି । ।
ଗାଉଛନ୍ତି ଯୋଦ୍ଧା ମହାବଳୀ ବୀର , *ଚତୁର୍ବିଧ ସୃଷ୍ଟି* କରନ୍ତି ସ୍ତୁତି ।
ଗାଉଛନ୍ତି ଖଣ୍ଡ ମଣ୍ଡଳ ବ୍ରହ୍ମାଣ୍ଡ, ଧରିଅଛୁ ଯାହା ତୁ କରି ସୃଷ୍ଟି । ।
ତୋ ନାମ ରସିକ ଭକ୍ତ ଗାଉଛନ୍ତି , ଭଲ ପାଉ ପ୍ରଭୁ ଯାହାଙ୍କୁ ତୁହି ।
ମନେ ନାହିଁ ଆଉ କେତେ ଗାଉଛନ୍ତି , ନାନକ ବିଚାର କରି ନୁହଇ । ।
ସଦା ସତ୍ୟ ସିଏ ସେ ସଚ୍ଚା ସାହିବ , ଅଟେ ଚିର ସତ୍ୟ ତାର ମହିମା ।
ଅଛି ଆଉ ଥିବ ସେ ଯାଏ ନା ଯିବ , ଯେ କରିଛି ଏଇ ସୃଷ୍ଟି ରଚନା । ।

ନାନା ରଙ୍ଗେ ନାନା ବସ୍ତୁ ସୃଷ୍ଟି କରି , ମାୟାର ରଚନା କରିଛି ଯିଏ ।
ଯେଉଁ ପରି ଇଛା ହେଉଅଛି ତାର , ସୃଷ୍ଟି ରଚି ଆପେ ଦେଖୁଛି ସିଏ ।।
ତାହା କରେ ଯାହା ଭଲ ଲାଗେ ତାକୁ , ତା ପାଶେ ନ ଚଳେ ଆଜ୍ଞା କାହାର ।
ସମ୍ରାଟଙ୍କର ସେ ସମ୍ରାଟ ନାନକ , ରହିବା ଉଚିତ ଆଜ୍ଞାରେ ତାର ।।୨୭।।
*(( ଲେଖି :- ପ୍ରାଣିର ପାପ ପୂଣ୍ୟର ହିସାବ ))*
*((ଚତୁର୍ବିଧ ସୃଷ୍ଟି :- ଅଣ୍ଡଜ, ଜରାୟୁଜ, ସ୍ୱେତଜ, ଉଦ୍ଭିଜ୍ଜ))*

੨੮--- *ਮੁੰਦਾ ਸੰਤੋਖੁ ਸਰਮੁ ਪਤੁ ਝੋਲੀ ਧਿਆਨ ਕੀ ਕਰਹਿ ਬਿਭੂਤਿ।। ਖਿੰਥਾ ਕਾਲੁ ਕੁਆਰੀ ਕਾਇਆ ਜੁਗਤਿ ਡੰਡਾ ਪਰਤੀਤਿ।। ਆਈ ਪੰਥੀ ਸਗਲ ਜਮਾਤੀ ਮਨਿ ਜੀਤੈ ਜਗੁ ਜੀਤੁ।।ਆਦੇਸੁ ਤਿਸੈ ਆਦੇਸੁ।। ਆਦਿ ਅਨੀਲੁ ਅਨਾਦਿ ਅਨਾਹਤਿ ਜੁਗੁ ਜੁਗੁ ਏਕੋ ਵੇਸੁ।।* ***੨੮।।***
୨୮--- *ମୂଂଦା ସଂତୋଖୁ ସରମୁ ପତୁ ଝୋଲୀ ଧିଆନ କୀ କରହି ବିଭୂତି ।। ଖିଂଥା କାଲୁ କୁଆରୀ କାଇଆ ଜୁଗତି ଡଂଡା ପରତୀତି ।। ଆଈ ପଂଥୀ ସଗଲ ଜମାତୀ ମନି ଜୀତୈ ଜଗୁ ଜୀତୁ ।।ଆଦେସୁ ତିସୈ ଆଦେସୁ ।। ଆଦି ଅନୀଲୁ ଅନାଦି ଅନାହତି ଜୁଗୁ ଜୁଗୁ ଏକୋ ୱେସୁ ।। ୨୮ ।।*

ଯଦି ତୁ କରିବୁ ସନ୍ତୋଷକୁ ମୁଦ୍ରା , ଶ୍ରମକୁ କରିବୁ ତୋ ପାତ୍ର, ଝୁଲି ।
ଶୁଣ ଆରେ ଯୋଗୀ ପାରିବୁ ଯଦି ତୁ , ଶରୀରେ ଧ୍ୟାନର ବିଭୁତି ବୋଳି ।।
ମୃତ୍ୟୁ ଭୟ କୁ ତୋ ଅଙ୍ଗବସ୍ତ୍ର କରି , ଶରୀର କରିବୁ ବିକାର ଶୂନ୍ୟ ।
ଏହା ହିଁ ହୋଇବ ଯୋଗ ଆଚରଣ , ବିଶ୍ୱାସର ଦଣ୍ଡ କର ଧାରଣ ।।
*ଆଈପନ୍ଥୀ* ବୋଲି ଜାଣିବୁ ନିଜକୁ , ସଭିଙ୍କି ମଣିବୁ ଯଦି ସମାନ ।
ସକଳ ଜଗତ ଜିଣି ତୁ ପାରିବୁ , ଜିଣି ପାରିଲେ ତୁ ଆପଣା ମନ ।।
କର ତାକୁ ସଦା ତୁ ନମସ୍କାର , ଆଦି ଅନୀଳ ଅନାଦି ଅନାହତ
ଯୁଗେ ଯୁଗେ ଏକ ବେଶ ଯାହାର ।।୨୮ ।।
*(( ଆଈପନ୍ଥୀ :- ଯୋଗୀମାନଙ୍କର ୧୨ ପନ୍ଥ ସମ୍ପ୍ରଦାୟ ମଧ୍ୟରୁ ଶ୍ରେଷ୍ଠ ପନ୍ଥ ))*

੨੯--- *ਭੁਗਤਿ ਗਿਆਨੁ ਦਇਆ ਭੰਡਾਰਣਿ ਘਟਿ ਘਟਿ ਵਾਜਹਿ ਨਾਦ।। ਆਪਿ ਨਾਥੁ ਨਾਥੀ ਸਭ ਜਾ ਕੀ ਰਿਧਿ ਸਿਧਿ ਅਵਰਾ ਸਾਦ।। ਸੰਜੋਗੁ ਵਿਜੋਗੁ ਦੁਇ ਕਾਰ ਚਲਾਵਹਿ ਲੇਖੇ ਆਵਹਿ ਭਾਗ।। ਆਦੇਸੁ ਤਿਸੈ ਆਦੇਸੁ।। ਆਦਿ ਅਨੀਲੁ ਅਨਾਦਿ ਅਨਾਹਤਿ ਜੁਗੁ ਜੁਗੁ ਏਕੋ ਵੇਸੁ।।* ***੨੯।।***

୨୯--- *ଭୁଗତି ଗିଆନୁ ଦଇଆ ଭଂଡାରଣି ଘଟି ଘଟି ୱାଜହି ନାଦ ।। ଆପି ନାଥୁ ନାଥୀ ସଭ ଜା କୀ ରିଧି ସିଧି ଅୱରା ସାଦ ।। ସଂଜୋଗୁ ୱିଜୋଗୁ ଦୁଇ କାର ଚଲାୱହି ଲେଖେ ଆୱହି ଭାଗ ।। ଆଦେସୁ ତିସୈ ଆଦେସୁ ।। ଆଦି ଅନୀଲୁ ଅନାଦି ଅନାହତି ଜୁଗୁ ଜୁଗୁ ଏକୋ ୱେସୁ ।।* ***୨୯*** *।।*

ଦୟା ପରଷିବ ଯେଉଁ ପ୍ରଭୁ ଜ୍ଞାନ , ସେ ଜ୍ଞାନ ହୋଇବ ତୋର ଭୋଜନ ।
ଶୁଣ ଯୋଗୀ ଘଟେ ଘଟେ ବାଜେ *ନାଦ* , ଜୀବନ ତୋହର ହୋଇବ ଧନ୍ୟ ।।
ଏକ ପରଂବ୍ରହ୍ମ ହେଉ ତୋର ନାଥ , ଯାହର ବଶ୍ୟ ଏ ସାରା ସଂସାର ।
ଋଦ୍ଧି ସିଦ୍ଧି ଯେତେ ସବୁ ବ୍ୟର୍ଥ ଯୋଗୀ , ନିଏ ଅନ୍ୟ ଦିଗେ ପ୍ରଭୁଠୁଁ ଦୂର ।।
ସଂଯୋଗ ବିଯୋଗ ଏ ଦୁହେଁ ଚଳାନ୍ତି , ସବୁ କାମ ଧନ୍ଦା ଏ ଜଗତର ।
କର୍ମ ଅନୁସାରେ ଯାହା ଲେଖା ଅଛି , ମିଳିଥାଇ ଭାଗ୍ୟ ସେହି ପ୍ରକାର ।
କର ତାକୁ ସଦା ତୁ ନମସ୍କାର , ଆଦି ଅନୀଳ ଅନାଦି ଅନାହତ
ଯୁଗେ ଯୁଗେ ଏକ ବେଶ ଯାହାର ।।**୨୯** ।।
*(( ନାଦ* **:-** *ଯୋଗୀମାନେ ଖାଇଲା ବେଳେ ବଜାନ୍ତି । ବାଦ୍ୟଟି ଗଳାରେ ଝୁଲୁଥାଏ ))*

୩୦--- *ਏਕਾ ਮਾਈ ਜੁਗਤਿ ਵਿਆਈ ਤਿਨਿ ਚੇਲੇ ਪਰਵਾਣੁ।। ਇਕੁ ਸੰਸਾਰੀ ਇਕੁ ਭੰਡਾਰੀ ਇਕੁ ਲਾਏ ਦੀਬਾਣੁ।। ਜਿਵ ਤਿਸੁ ਭਾਵੈ ਤਿਵੈ ਚਲਾਵੈ ਜਿਵ ਹੋਵੈ ਫੁਰਮਾਣੁ।। ਓਹੁ ਵੇਖੈ ਓਨਾ ਨਦਰਿ ਨ ਆਵੈ ਬਹੁਤਾ ਏਹੁ ਵਿਡਾਣੁ।। ਆਦੇਸੁ ਤਿਸੈ ਆਦੇਸੁ।। ਆਦਿ ਅਨੀਲੁ ਅਨਾਦਿ ਅਨਾਹਤਿ ਜੁਗੁ ਜੁਗੁ ਏਕੋ ਵੇਸੁ।।* ***੩੦*** *।।*

୩୦--- *ଏକା ମାଈ ଜୁଗତି ୱିଆଈ ତିନି ଚେଲେ ପରୱାଣୁ ।। ଇକୁ ସଂସାରୀ ଇକୁ ଭଂଡାରୀ ଇକୁ ଲାଏ ଦୀବାଣୁ ।। ଜିୱ ତିସୁ ଭାୱୈ ତିୱୈ ଚଲାୱୈ ଜିୱ ହୋୱୈ ଫୁରମାଣୁ ।। ଓହୁ ୱେଖୈ ଓନା ନଦରି ନ ଆୱୈ ବହୁତା ଏହୁ ୱିଡାଣୁ ।। ଆଦେସୁ ତିସୈ ଆଦେସୁ ।। ଆଦି ଅନୀଲୁ ଅନାଦି ଅନାହତି ଜୁଗୁ ଜୁଗୁ ଏକୋ ୱେସୁ ।।* ***୩୦*** *।।*

କହୁଥାନ୍ତି ସିନା ଏକ ବ୍ରହ୍ମ ସଙ୍ଗେ , ମାୟା ଯେବେ ପରା ଯୁକ୍ତ ହୋଇଲା,
ତିନି ଦେବତାଙ୍କୁ ଜନମ ଦେଲା ସେ , ତାଙ୍କରି ହାତରେ ସୃଷ୍ଟି ଚଳିଲା ।।
ଜଣେ କେ ସଂସାରୀ ରଚଇ ସଂସାର , ପାଳେ କେ ଭଣ୍ଡାରୀ ଦେଇ ଆହାର ।
ଆଉ ଜଣେ କିଏ ବସି ଦରବାରେ , ସବୁରି କର୍ମକୁ କରେ ବିଚାର ।।

କିନ୍ତୁ ଯଦି ସତ ଜାଣିବାକୁ ଚାହଁ , ପ୍ରଭୁ ଆଜ୍ଞାରେ ଏ ସୃଷ୍ଟି ଚଳଇ ।
ଯେପରି ଚାହେଁ ସେ ଚଳାଏ ସେପରି , ସେହିପରି ତାର ଆଜ୍ଞା ଦିଅଇ ।।
ଦେଖାଚାହାଁ କରେ ସର୍ବଦା ସବୁରି , ଧ୍ୟାନ ଦେଇ ଥାଇ ସବୁରି ସିଏ ।
କି ଆଶ୍ଚର୍ଯ୍ୟ କଥା ସବୁକୁ ଦେଖେ ସେ , ତାହାକୁ ଦେଖି ନ ପାରଇ କିଏ ।।
କର ତାକୁ ସଦା ତୁ ନମସ୍କାର , ଆଦି ଅନୀଳ ଅନାଦି ଅନାହତ ,
ଯୁଗେ ଯୁଗେ ଏକ ବେଶ ଯାହାର ।।**୩୦** ।।

੩੧--- *ਆਸਣੁ ਲੋਇ ਲੋਇ ਭੰਡਾਰ।। ਜੋ ਕਿਛੁ ਪਾਇਆ ਸੁ ਏਕਾ ਵਾਰ।। ਕਰਿ ਕਰਿ ਵੇਖੈ ਸਿਰਜਣਹਾਰੁ।। ਨਾਨਕ ਸਚੇ ਕੀ ਸਾਚੀ ਕਾਰ।। ਆਦੇਸੁ ਤਿਸੈ ਆਦੇਸੁ।। ਆਦਿ ਅਨੀਲੁ ਅਨਾਦਿ ਅਨਾਹਤਿ ਜੁਗੁ ਜੁਗੁ ਏਕੋ ਵੇਸੁ।।**੩੧**।।*

୩୧--- *ଆସଣୁ ଲୋଇ ଲୋଇ ଭଂଡାର ।। ଜୋ କିଛୁ ପାଇଆ ସୁ ଏକା ୱାର ।। କରି କରି ୱେଖୈ ସିରଜଣହାରୁ ।। ନାନକ ସଚେ କୀ ସାଚୀ କାର ।। ଆଦେସୁ ତିସୈ ଆଦେସୁ ।। ଆଦି ଅନୀଲୁ ଅନାଦି ଅନାହତି ଜୁଗୁ ଜୁଗୁ ଏକୋ ୱେସୁ ।।**୩୧** ।।*

ସବୁ ଲୋକେ ତାର ରହିଛି ଆସନ , ସବୁ ଲୋକେ ତାର ଅଛି ଭଣ୍ଡାର ।
ସବୁ ଭଣ୍ଡାରରେ ଯାହା ଅଛି ତାହା , ଭରି ସେ ଦେଇଛି ଥରେ ମାତର ।।
ସୃଷ୍ଟି କରତା ସେ ଅଟଇ ସବୁରି , ସୃଷ୍ଟି କରେ ଆଉ ସମ୍ଭାଳି ଥାଏ ।
ନାନକ ତାହାର ସବୁ କର୍ମ ସଚ୍ଚା , ସଚ୍ଚା ସରକାର ଅଟଇ ସିଏ ।।
କର ତାକୁ ସଦା ତୁ ନମସ୍କାର , ଆଦି ଅନୀଳ ଅନାଦି ଅନାହତ ,
ଯୁଗେ ଯୁଗେ ଏକ ବେଶ ଯାହାର ।।**୩୧** ।।

੩੨--- *ਇਕ ਦੂ ਜੀਭੌ ਲਖ ਹੋਹਿ ਲਖ ਹੋਵਹਿ ਲਖ ਵੀਸ।। ਲਖੁ ਲਖੁ ਗੇੜਾ ਆਖੀਅਹਿ ਏਕੁ ਨਾਮੁ ਜਗਦੀਸ।। ਏਤੁ ਰਾਹਿ ਪਤਿ ਪਵੜੀਆ ਚੜੀਐ ਹੋਇ ਇਕੀਸ।। ਸੁਣਿ ਗਲਾ ਆਕਾਸ ਕੀ ਕੀਟਾ ਆਈ ਰੀਸ।। ਨਾਨਕ ਨਦਰੀ ਪਾਈਐ ਕੂੜੀ ਕੂੜੈ ਠੀਸ।।**੩੨**।।*

୩୨--- *ଇକ ଦୂ ଜୀଭୌ ଲଖ ହୋହି ଲଖ ହୋୱହି ଲଖ ୱୀସ ।। ଲଖୁ ଲଖୁ ଗେଡ଼ା ଆଖୀଅହି ଏକୁ ନାମୁ ଜଗଦୀସ ।। ଏତୁ ରାହି ପତି ପୱଡ଼ୀଆ ଚଡ଼ୀଐ ହୋଇ ଇକୀସ ।। ସୁଣି ଗଲା ଆକାସ କୀ କୀଟା ଆଈ ରୀସ ।। ନାନକ ନଦରୀ ପାଈଐ କୂଡ଼ୀ କୂଡ଼ୈ ଠୀସ ।।**୩୨** ।।*

ଗୋଟିଏ ଜିହ୍ୱାରୁ ଲକ୍ଷେ ଜିହ୍ୱା ହେବ , ଲକ୍ଷେ ଜିହ୍ୱା ଲକ୍ଷ କୋଡ଼ି ହୋଇବ ।
ସବୁ ସେ ଜିହ୍ୱାରେ ଲକ୍ଷେ ଲକ୍ଷେ ବାର , ପ୍ରଭୁ ଜଗଦୀଶ ନାମ ଘୋଷିବ ।।
ବୃଥା ଏ ପ୍ରୟାସ ଏହି ପରି କେବେ , ପ୍ରଭୁ ସଙ୍ଗେ କାହା ଭେଟ ନୋହିବ ।
ମିଳନର ପଥେ ଯେତେକ ପାହାଚ , ଅହଂ ତେଜି ଚଢ଼ି ଯିବାକୁ ହେବ ।।
ଆକାଶର କଥା ଶୁଣି ସିନା କୀଟ , ପ୍ରଭୁ ମିଳନକୁ କରଇ ଆଶା ।
ପ୍ରଭୁ ମିଳେ ପ୍ରଭୁ କୃପାରେ ନାନକ , ଆଉ ସବୁ ଯେତେ ମିଥ୍ୟା ଦୂରାଶା ।।୩୨।।

*੩੩--- ਆਖਣਿ ਜੋਰੁ ਚੁਪੈ ਨਹ ਜੋਰੁ।। ਜੋਰੁ ਨ ਮੰਗਣਿ ਦੇਣਿ ਨ ਜੋਰੁ।। ਜੋਰੁ ਨ ਜੀਵਣਿ ਮਰਣਿ ਨ ਜੋਰੁ।। ਜੋਰੁ ਨ ਰਾਜਿ ਮਾਲਿ ਮਨਿ ਸੋਰੁ।। ਜੋਰੁ ਨ ਸੁਰਤੀ ਗਿਆਨਿ ਵੀਚਾਰਿ।। ਜੋਰੁ ਨ ਜੁਗਤੀ ਛੁਟੈ ਸੰਸਾਰੁ।। ਜਿਸੁ ਹਥਿ ਜ਼ੋਰੁ ਕਰਿ ਵੇਖੈ ਸੋਇ।। ਨਾਨਕ ਉਤਮੁ ਨੀਚੁ ਨ ਕੋਇ।।**੩੩**।।*

*୩୩--- ଆଖଣି ଜୋରୁ ଚୁପୈ ନହ ଜୋରୁ ।। ଜୋରୁ ନ ମଂଗଣି ଦେଣି ନ ଜୋରୁ ।। ଜୋରୁ ନ ଜୀୱଣି ମରଣି ନ ଜୋରୁ ।। ଜୋରୁ ନ ରାଜି ମାଲି ମନି ସୋରୁ ।। ଜୋରୁ ନ ସୁରତୀ ଗିଆନି ୱୀଚାରି ।। ଜୋରୁ ନ ଜୁଗତୀ ଛୁଟୈ ସଂସାରୁ ।। ଜିସୁ ହଥି ଜୋରୁ କରି ୱେଖୈ ସୋଇ ।। ନାନକ ଉତମୁ ନୀଚୁ ନ କୋଇ ।।**୩୩**।।*

କହିବାକୁ ବଳ କାହାର ନ ଥାଏ , ନିରବ ହେବାକୁ ନ ଥାଇ ବଳ ।
ମାଗିବାକୁ ବଳ କାହାର ନ ଥାଇ , ଦେବା ପାଇଁ କିଛି ନ ଥାଇ ବଳ ।।
ବଞ୍ଚିବାକୁ ବଳ କାହାର ନ ଥାଇ , ମରିବାକୁ ବଳ ନ ଥାଇ କା'ର ।
ରାଜ୍ୟ, ଧନ ଲାଗି ନ ଥାଇ କା' ବଳ , ଯାହା ଲାଗି ମନ କରେ ମୁଁକାର ।।
କା ବଳ ନ ଥାଇ ଧ୍ୟାନର ଉପରେ , ଜ୍ଞାନ ବିଚାରକୁ ବଳ ନ ଥାଇ ।
କା ବଳ ନ ଥାଇ ସେଇ ଯୁକ୍ତି ପରେ , ଯା ବଳେ ସଂସାରୁ ମୁକ୍ତି ମିଳଇ ।।
ଯାହା ହାତେ ସବୁ ବଳ ରହି ଅଛି , ସୃଷ୍ଟି କରି ସବୁ ସମ୍ଭାଳେ ସିଏ ।
ନାନକ ସିଏ ହିଁ କରେ ସବୁ କିଛି , ନାହିଁ ଉଚ୍ଚନୀଚ ଜଗତେ କିଏ ।।୩୩।।

*੩੪--- ਰਾਤੀ ਰੁਤੀ ਥਿਤੀ ਵਾਰ।। ਪਵਣ ਪਾਣੀ ਅਗਨੀ ਪਾਤਾਲ।। ਤਿਸੁ ਵਿਚਿ ਧਰਤੀ ਥਾਪਿ ਰਖੀ ਧਰਮ ਸਾਲ।। ਤਿਸੁ ਵਿਚਿ ਜੀਅ ਜੁਗਤਿ ਕੇ ਰੰਗ।। ਤਿਨ ਕੇ ਨਾਮ ਅਨੇਕ ਅਨੰਤ।। ਕਰਮੀ ਕਰਮੀ ਹੋਇ ਵੀਚਾਰੁ।। ਸਚਾ ਆਪਿ ਸਚਾ ਦਰਬਾਰੁ।। ਤਿਥੈ ਸੋਹਨਿ ਪੰਚ ਪਰਵਾਣੁ।। ਨਦਰੀ ਕਰਮਿ ਪਵੈ ਨੀਸਾਣੁ।। ਕਚ ਪਕਾਈ ਓਥੈ ਪਾਇ।। ਨਾਨਕ ਗਇਆ ਜਾਪੈ ਜਾਇ।।**੩੪**।।*

*୩୪--- ରାତୀ ରୁତୀ ଥିତୀ ୱାର । । ପୱଣ ପାଣୀ ଅଗନୀ ପାତାଲ । । ତିସୁ ୱିଚି ଧରତୀ ଥାପି ରଖୀ ଧରମ ସାଲ । । ତିସୁ ୱିଚି ଜୀଅ ଜୁଗତି କେ ରଂଗ । । ତିନ କେ ନାମ ଅନେକ ଅନଂତ । । କରମୀ କରମୀ ହୋଇ ୱୀଚାରୁ । । ସଚା ଆପି ସଚା ଦରବାରୁ । । ତିଥୈ ସୋହନି ପଂଚ ପରୱାଣୁ । । ନଦରୀ କରମି ପୱୈ ନୀସାଣୁ । । କଚ ପକାଇ ଓଥୈ ପାଇ । । ନାନକ ଗଇଆ ଜାପୈ ଜାଇ । ।**୩୪** । ।*

ଆପଣା ଆଜ୍ଞାରେ ସୂର୍ଯ୍ୟ ସୃଷ୍ଟି କରି , ଦିନ ରାତି ଆଉ ଋତୁ ସୃଜିଲା ।
ଚନ୍ଦ୍ର ସଙ୍ଗେ ନାନା ତିଥି କରି ପ୍ରଭୁ , ତିଥି ସଙ୍ଗତରେ ବାର ରଚିଲା । ।
ଆପଣା ଆଜ୍ଞାରେ ସୃଷ୍ଟି କଲା ପ୍ରଭୁ , ବାୟୁ ଜଳ ଅଗ୍ନି ଆଉ ପାତାଳ ।
ଏ ସବୁ ମଧ୍ୟରେ ଥାପିଲା ଧରିତ୍ରୀ , କରି ତାକୁ ଧର୍ମ ଅର୍ଜନ ସ୍ଥଳ । ।
ସେଥିରେ ଅଛନ୍ତି ନାନାବିଧ ଜୀବ , ତାହାର ଗଣନା କରିବ କିଏ ।
କେତେ ରଙ୍ଗେ କେତେ ନାମରେ ଅଛନ୍ତି , ତାହାର ହିସାବ ପାଇବ କିଏ । ।
ଯିଏ ଯେଉଁ ପରି କର୍ମ କରିଥାଇ , ସେହି ପରି ତାର ହୁଏ ବିଚାର ।
ବିଚାରରେ ପ୍ରଭୁ କରେ ନାହିଁ ତୃଟି , ସଚ୍ଚା ସିଏ ସଚ୍ଚା ତା ଦରବାର । ।
ଶୋଭା ପାଏ ତହିଁ ସନ୍ଥଜନ ସଦା , ପ୍ରଭୁ ସମ୍ମୁଖରେ ଲଭି ସମ୍ମାନ ।
ପ୍ରଭୁ କୃପା ଦୃଷ୍ଟି ପଡ଼େ ତା ଉପରେ , ମଥାରେ ଲଭେ ସେ ମହାନିଶାଣ । ।
କଞ୍ଚା କିଏ ଆଉ ପାଚିଲା କିଏ ସେ , ପରୀକ୍ଷାକୁ ସବୁ ହୁଅନ୍ତି ଟଣା ।
ପହଞ୍ଚିଲେ ପ୍ରଭୁ ନିକଟରେ ନାନକ , ଭଲମନ୍ଦ ସବୁ ପଡ଼ଇ ଜଣା । ।**୩୪** । ।

*੩੫--- ਧਰਮ ਖੰਡ ਕਾ ਏਹੋ ਧਰਮੁ।। ਗਿਆਨ ਖੰਡ ਕਾ ਆਖਹੁ ਕਰਮੁ।। ਕੇਤੇ ਪਵਣ ਪਾਣੀ ਵੈਸੰਤਰ ਕੇਤੇ ਕਾਨ ਮਹੇਸ।। ਕੇਤੇ ਬਰਮੇ ਘਾੜਤਿ ਘੜੀਅਹਿ ਰੂਪ ਰੰਗ ਕੇ ਵੇਸ।। ਕੇਤੀਆ ਕਰਮ ਭੂਮੀ ਮੇਰ ਕੇਤੇ ਕੇਤੇ ਧੂ ਉਪਦੇਸ।। ਕੇਤੇ ਇੰਦ ਚੰਦ ਸੂਰ ਕੇਤੇ ਕੇਤੇ ਮੰਡਲ ਦੇਸ।। ਕੇਤੇ ਸਿਧ ਬੁਧ ਨਾਥ ਕੇਤੇ ਕੇਤੇ ਦੇਵੀ ਵੇਸ।। ਕੇਤੇ ਦੇਵ ਦਾਨਵ ਮੁਨਿ ਕੇਤੇ ਕੇਤੇ ਰਤਨ ਸਮੁੰਦ।। ਕੇਤੀਆ ਖਾਣੀ ਕੇਤੀਆ ਬਾਣੀ ਕੇਤੇ ਪਾਤ ਨਰਿੰਦ।। ਕੇਤੀਆ ਸੁਰਤੀ ਸੇਵਕ ਕੇਤੇ ਨਾਨਕ ਅੰਤੁ ਨ ਅੰਤੁ।।**੩੫**।।*

*୩୫--- ଧରମ ଖଂଡ କା ଏହୋ ଧରମୁ । । ଗିଆନ ଖଂଡ କା ଆଖହୁ କରମୁ । । କେତେ ପୱଣ ପାଣୀ ୱୈସଂତର କେତେ କାନ ମହେସ । । କେତେ ବରମେ ଘାଡ଼ତି ଘଡ଼ୀଅହି ରୂପ ରଂଗ କେ ୱେସ । । କେତୀଆ କରମ ଭୂମୀ ମେର କେତେ କେତେ ଧୂ ଉପଦେସ । । କେତେ ଇଂଦ ଚଂଦ ସୂର କେତେ କେତେ ମଂଡଲ ଦେସ । । କେତେ ସିଧ ବୁଧ ନାଥ କେତେ*

*କେତେ ଦେୱୀ ୱେସ । । କେତେ ଦେୱ ଦାନୱ ମୁନି କେତେ କେତେ ରତନ ସମୁଂଦ । । କେତୀଆ ଖାଣୀ କେତୀଆ ବାଣୀ କେତେ ପାତ ନରିଂଦ । । କେତୀଆ ସୁରତୀ ସେୱକ କେତେ ନାନକ ଅଂତୁ ନ ଅଂତୁ । ।* ***୩୫*** *। ।*

ଧରମ ଖଣ୍ଡର ଏହା ହିଁ ଧରମ , ଯାହା ଯାହା ମୁହିଁ କଲି ବଖାଣ ।
ଯାହା ଅଟେ ଜ୍ଞାନଖଣ୍ଡର କର୍ତ୍ତବ୍ୟ , ଆଗେ ଆଗେ ମୁହିଁ କହୁଛି ଶୁଣ । ।
ଛନ୍ତି ତହିଁ କେତେ ବାୟୁ ଜଳ ଅଗ୍ନି , ଛନ୍ତି କେତେ କୃଷ୍ଣ କେତେ ମହେଶ ।
କେତେ କେତେ ବ୍ରହ୍ମା ଗଢ଼ା ହେଉଛନ୍ତି , ଯାହା ରୂପ ରଙ୍ଗ ଅନେକ ବେଶ । ।
କେତେ କର୍ମଭୂମି ମେରୁ ପରବତ , କେତେ ଧ୍ରୁବ କେତେ ତା ଉପଦେଶ ।
ଛନ୍ତି କେତେ ଇନ୍ଦ୍ର କେତେ ଚନ୍ଦ୍ର ସୂର୍ଯ୍ୟ , କେତେ କେତେ ପୁଣି ମଣ୍ଡଳ ଦେଶ । ।
ଛନ୍ତି ତହିଁ କେତେ ସିଦ୍ଧ ବୁଦ୍ଧ ନାଥ , ଅନେକ ବେଶରେ ଦେବୀ ଅନେକ ।
ଦେବତା ଦାନବ ମୁନି କେତେ ଛନ୍ତି , ଅସଂଖ୍ୟ ସମୁଦ୍ର ରତ୍ନ ଅସଂଖ୍ୟ । ।
ଜୀବ ରଚନାର କେତେ କେତେ ଖଣି , କେତେ ବାଣୀ ଆଉ କେତେ ଶାସକ ।
କେତେ ଧ୍ୟାନ କେତେ ଧ୍ୟାନସ୍ଥ ସେବକ , ସେ ସବୁର ଅନ୍ତ ନାହିଁ ନାନକ । ।**୩୫** । ।

३६--- ਗਿਆਨ ਖੰਡ ਮਹਿ ਗਿਆਨੁ ਪਰਚੰਡੁ।। ਤਿਥੈ ਨਾਦ ਬਿਨੋਦ ਕੋਡ ਅਨੰਦੁ।। ਸਰਮ ਖੰਡ ਕੀ ਬਾਣੀ ਰੂਪੁ।। ਤਿਥੈ ਘਾੜਤਿ ਘੜੀਐ ਬਹੁਤੁ ਅਨੂਪੁ।। ਤਾ ਕੀਆ ਗਲਾ ਕਥੀਆ ਨਾ ਜਾਹਿ।। ਜੇ ਕੋ ਕਹੈ ਪਿਛੈ ਪਛੁਤਾਇ।। ਤਿਥੈ ਘੜੀਐ ਸੁਰਤਿ ਮਤਿ ਮਨਿ ਬੁਧਿ।। ਤਿਥੈ ਘੜੀਐ ਸੁਰਾ ਸਿਧਾ ਕੀ ਸੁਧਿ।।**३६**।।

୩୬--- ଗିଆନ ଖଂଡ ମହି ଗିଆନୁ ପରଚଂଡୁ । । ତିଥୈ ନାଦ ବିନୋଦ କୋଡ ଅନଂଦୁ । । ସରମ ଖଂଡ କୀ ବାଣୀ ରୂପୁ । । ତିଥୈ ଘାଡ଼ତି ଘଡ଼ିଐ ବହୁତୁ ଅନୂପୁ । । ତା କୀଆ ଗଲା କଥୀଆ ନା ଜାହି । । ଜେ କୋ କହୈ ପିଛୈ ପଛୁତାଇ । । ତିଥୈ ଘଡ଼ୀଐ ସୁରତି ମତି ମନି ବୁଧି । । ତିଥୈ ଘଡ଼ୀଐ ସୁରା ସିଧା କୀ ସୁଧି । ।**୩୬** । ।

ଜ୍ଞାନଖଣ୍ଡ ମଧ୍ୟେ ଜ୍ଞାନ ହିଁ ପ୍ରଚଣ୍ଡ , ଜ୍ଞାନର ଆଲୋକେ ସଦା ରଞ୍ଜିତ ।
କୋଟି ଆଧ୍ୟାତ୍ମିକ ସୁଖ ମିଳେ ତହିଁ , ଶୁଭେ ସଦା ଜ୍ଞାନ ନାଦ ସଂଗୀତ । ।
ଶ୍ରମଖଣ୍ଡ ଅଟେ ଅତି ମନୋହର , ମିଳଇ ତହିଁରେ ସୁନ୍ଦର ରୂପ ।
ଗଢ଼ିହୁଏ ଯିଏ ଏହି ଖଣ୍ଡ ମଧ୍ୟେ , ହୋଇ ଥାଇ ତାର ମନ ଅନୂପ । ।

ଯାହା ହୁଏ ତହିଁ କେ ପାରିବ କହି , ବର୍ଣ୍ଣନା ତାହାର କରି ନୁହଇ ।
ପଛେ ଅନୁତାପ କରିଥାଇ ସିଏ , କହିବାକୁ ଯିଏ ଚେଷ୍ଟା କରଇ ।।
ଗଢ଼ାହୁଏ ତହିଁ ବିକଶିତ କରି , ଜ୍ଞାନ ଧ୍ୟାନ ବୁଦ୍ଧି ଆବର ମନ ।
ଗଢ଼ା ହୁଏ ତହିଁ ଦେବତାଙ୍କ ବୁଦ୍ଧି , ସିଦ୍ଧଙ୍କ ପବିତ୍ର ଉତ୍ତମ ଜ୍ଞାନ ।।୩୬।।

*੩੭--- ਕਰਮ ਖੰਡ ਕੀ ਬਾਣੀ ਜੋਰੁ।। ਤਿਥੈ ਹੋਰੁ ਨ ਕੋਈ ਹੋਰੁ।। ਤਿਥੈ ਜੋਧ ਮਹਾਬਲ ਸੂਰ।। ਤਿਨ ਮਹਿ ਰਾਮੁ ਰਹਿਆ ਭਰਪੂਰ।। ਤਿਥੈ ਸੀਤੋ ਸੀਤਾ ਮਹਿਮਾ ਮਾਹਿ।। ਤਾ ਕੇ ਰੂਪ ਨ ਕਥਨੇ ਜਾਹਿ।। ਨਾ ਓਹਿ ਮਰਹਿ ਨ ਠਾਗੇ ਜਾਹਿ।। ਜਿਨ ਕੈ ਰਾਮੁ ਵਸੈ ਮਨ ਮਾਹਿ।। ਤਿਥੈ ਭਗਤ ਵਸਹਿ ਕੇ ਲੋਅ।। ਕਰਹਿ ਅਨੰਦੁ ਸਚਾ ਮਨਿ ਸੋਇ।। ਸਚ ਖੰਡ ਵਸੈ ਨਿਰੰਕਾਰੁ।। ਕਰਿ ਕਰਿ ਵੇਖੈ ਨਦਰਿ ਨਿਹਾਲ।। ਤਿਥੈ ਖੰਡ ਮੰਡਲ ਵਰਭੰਡ।। ਜੇ ਕੋ ਕਥੈ ਤ ਅੰਤ ਨ ਅੰਤ।। ਤਿਥੈ ਲੋਅ ਲੋਅ ਆਕਾਰ।। ਜਿਵ ਜਿਵ ਹੁਕਮੁ ਤਿਵੈ ਤਿਵ ਕਾਰ।। ਵੇਖੈ ਵਿਗਸੈ ਕਰਿ ਵੀਚਾਰੁ।। ਨਾਨਕ ਕਥਨਾ ਕਰੜਾ ਸਾਰੁ।।**੩੭**।।*

*୩୭--- କରମ ଖଂଡ କୀ ବାଣୀ ଜୋରୁ ।। ତିଥୈ ହୋରୁ ନ କୋଇ ହୋରୁ ।। ତିଥୈ ଜୋଧ ମହାବଲ ସୂର ।। ତିନ ମହି ରାମୁ ରହିଆ ଭରପୂର ।। ତିଥୈ ସୀତୋ ସୀତା ମହିମା ମାହି ।। ତା କେ ରୂପ ନ କଥନେ ଜାହି ।। ନା ଓହି ମରହି ନ ଠାଗେ ଜାହି ।। ଜିନ କୈ ରାମୁ ୱସୈ ମନ ମାହି ।। ତିଥୈ ଭଗତ ୱସହି କେ ଲୋଅ ।। କରହି ଅନଂଦୁ ସଚା ମନି ସୋଇ ।। ସଚ ଖଂଡ ୱସୈ ନିରଂକାରୁ ।। କରି କରି ୱେଖୈ ନଦରି ନିହାଲ ।। ତିଥୈ ଖଂଡ ମଂଡଲ ୱରଭଂଡ ।। ଜେ କୋ କଥୈ ତ ଅଂତ ନ ଅଂତ ।। ତିଥୈ ଲୋଅ ଲୋଅ ଆକାର ।। ଜିୱ ଜିୱ ହୁକମୁ ତିୱୈ ତିୱ କାର ।। ୱେଖୈ ୱିଗସୈ କରି ୱୀଚାରୁ ।। ନାନକ କଥନା କରଡ଼ା ସାରୁ ।।**୩୭**।।*

ଆଧ୍ୟାତ୍ମିକ ବଳେ ଗଢ଼ା କର୍ମଖଣ୍ଡ , ସେ ବଳ ଲଭଇ ଭକତ ତହିଁ ।
ଏକ ପ୍ରଭୁ ଜ୍ୟୋତି ହୋଇଅଛି ବ୍ୟାପ୍ତ , ଆଉ କିଛି ତହିଁ ନ ଥାଇ କାହିଁ ।।
ଏ ସ୍ଥିତିକି ସିଏ ହୁଅଇ ପ୍ରାପତ , ଯୋଦ୍ଧା ମହାବଳୀ ସେ ଶୂର ବୀର ।
ଅକାଳ ପୁରୁଷ ଶ୍ରୀରାମ ଜ୍ୟୋତିରେ , ପରିପୂର୍ଣ୍ଣ ଥାଇ ହୃଦ ଯାହାର ।।
ଯେ ଏଥେ ପହଞ୍ଚେ ପ୍ରଭୁ ମହିମାରେ , ପୂର୍ଣ୍ଣରୂପେ ସିଏ ଲୀନ ହୁଅଇ ।
ଆଧ୍ୟାତ୍ମିକ ରୂପ ସୌନ୍ଦର୍ଯ୍ୟ ବିକଶେ , ବର୍ଣ୍ଣନା ଯାହାର କରି ନୁହଇ ।।
ଭ୍ରମରେ ପକାଇ ନ ପାରଇ ମାୟା , ମୃତ୍ୟୁ ତାକୁ କେବେ ନ ପାରେ ଛୁଇଁ ।
ବାସ କରେ ସଦା ଯା ହୃଦୟେ ରାମ , ତାକୁ କିଏ ଦୁଃଖ ପାରିବ ଦେଇ ।।

ସବୁ ଭୁବନର କେତେ ଭକ୍ତ ଜନ , ରହନ୍ତି ଏ ଠାବେ ପ୍ରସନ୍ନ ହୋଇ ।
ଆନନ୍ଦ ଉଲ୍ଲାସେ ରହନ୍ତି ସଭିଏଁ , ସଚ୍ଚା ପ୍ରଭୁ ଠାରେ ଧ୍ୟାନ ଲଗାଇ ।।
ଏହାର ଆଗକୁ ଅଛି ସତ୍ୟଖଣ୍ଡ , ପ୍ରଭୁ ନିରାକାର ବସଇ ଯହିଁ ।
ରଚି ରଚି ସୃଷ୍ଟି ଦେଇ କୃପାଦୃଷ୍ଟି , ଆନନ୍ଦେ ସକଳ ସୃଷ୍ଟି ପାଳଇ ।।
କେତେ କେତେ ଖଣ୍ଡ ମଣ୍ଡଳ ବ୍ରହ୍ମାଣ୍ଡ , ସର୍ବ ଦିଗେ ପୂରି ରହିଛି ତହିଁ ।
ଗଣନାରେ ତାର ଅନ୍ତ ମିଳେ ନାହିଁ , ସବୁରି କଥା କେ ପାରିବ କହି ।।
ଭୁବନ ଉପରେ ଭୁବନ ଏଠାବେ , ଅଗଣିତ ରୂପ ଆକାର ଅଛି ।
ଯେଉଁ ପରି ପ୍ରଭୁ ଦେଉଅଛି ଆଜ୍ଞା , ସର୍ବତ୍ର ସେପରି କାର୍ଯ୍ୟ ହେଉଛି ।।
ପରଂବ୍ରହ୍ମ ପ୍ରଭୁ କରଇ ବିଚାର , ଦେଖି ଦେଖି ସବୁ ହୁଏ ପ୍ରସନ୍ନ ।
ନାନକ ସେ କଥା କଥନ କରିବା , ଲୁହାଚଣା ପରି ବଡ଼ କଠିନ ।।**୩୭** ।।
*((ଭୁବନ:-ଲୋକ- ଦେବଲୋକ , ଇନ୍ଦ୍ରଲୋକ ଆଦି ))*

੩੮--- *ਜਤੁ ਪਾਹਾਰਾ ਧੀਰਜੁ ਸੁਨਿਆਰੁ।। ਅਹਰਣਿ ਮਤਿ ਵੇਦੁ ਹਥੀਆਰੁ।। ਭਉ ਖਲਾ ਅਗਨਿ ਤਪ ਤਾਉ।। ਭਾਂਡਾ ਭਾਉ ਅੰਮ੍ਰਿਤੁ ਤਿਤੁ ਢਾਲਿ।। ਘੜੀਐ ਸਬਦੁ ਸਚੀ ਟਕਸਾਲ।। ਜਿਨ ਕਉ ਨਦਰਿ ਕਰਮੁ ਤਿਨ ਕਾਰ।। ਨਾਨਕ ਨਦਰੀ ਨਦਰਿ ਨਿਹਾਲ।।**੩੮**।।*

୩୮--- *ଜତୁ ପାହାରା ଧୀରଜୁ ସୁନିଆରୁ ।। ଅହରଣି ମତି ୱେଦୁ ହଥୀଆରୁ ।। ଭଉ ଖଲା ଅଗନି ତପ ତାଉ ।। ଭାଂଡା ଭାଉ ଅଂମ୍ରିତୁ ତିତୁ ଢାଲି ।। ଘଡ଼ୀଐ ସବଦୁ ସଚୀ ଟକସାଲ ।। ଜିନ କଉ ନଦରି କରମୁ ତିନ କାର ।। ନାନକ ନଦରୀ ନଦରି ନିହାଲ ।।**୩୮** ।।*

ଇନ୍ଦ୍ରିୟ ନିଗ୍ରହ ହେଉ ତୋର ଚୁଲ୍ଲା , ସ୍ୱର୍ଣ୍ଣକାର ହେଉ ଧୈର୍ଯ୍ୟ ତୋହର ।
ବୁଦ୍ଧିକୁ ତୋହର କର ତୁ ନିହାଇ , ଜ୍ଞାନକୁ କର ତୁ ତୋ ହତିଆର ।।
ପ୍ରଭୁ ଭୟକୁ କର ଫୁଙ୍କନଳି , ତପ ତାପ ତୋର ଦିଅ ତତାଇ ।
ରଖି ହୃଦୟର ପ୍ରେମ କୋଇ ତହିଁ , ଫୁଙ୍କ ଦେଇ ଅଗ୍ନି ଦିଅ ଜଳାଇ ।।
ହୃଦୟର ସଚ୍ଚା ଭକତି ଅମୃତ , ତରଳାଇ ଦିଅ ପ୍ରେମ କୋଇରେ ।
ଏହା ହିଁ ନାମର ସଚ୍ଚା ମୁଦ୍ରାଶାଳା , ନାମ ସ୍ୱର୍ଣ୍ଣମୁଦ୍ରା ଗଢ଼ ଏଥିରେ ।।
ପ୍ରଭୁ କୃପା ଦୃଷ୍ଟି ଯା ଉପରେ ଥାଇ , ସଚ୍ଚା ନାମ ଶବ୍ଦ ଗଢ଼ି ସେ ପାରେ ।
ନାନକ ଲଭି ସେ ପ୍ରଭୁ କୃପା ଦୃଷ୍ଟି , ପୂର୍ଣ୍ଣ ମନୋରଥ ହୁଏ ସଂସାରେ ।।**୩୮** ।।

*(( କୋଇ :- ଧାତୁ ଆଉଟିବା ମାଟିପାତ୍ର ,*

*(( ନିହାଇ :- ଲୁହାମୁଣ୍ଡ - ଯାହା ଉପରେ ତତଲା ସୁନା ରୂପା ରଖି ସୁନାରି ହାତୁଡ଼ିରେ ପିଟି ଅଳଙ୍କାର ତିଆରୀ କରନ୍ତି ))*

## ਸਲੋਕ

*ਪਵਣੁ ਗੁਰੂ ਪਾਣੀ ਪਿਤਾ ਮਾਤਾ ਧਰਤਿ ਮਹਤੁ।।*
*ਦਿਵਸੁ ਰਾਤਿ ਦੁਇ ਦਾਈ ਦਾਇਆ ਖੇਲੈ ਸਗਲ ਜਗਤੁ।।*
*ਚੰਗਿਆਈਆ ਬੁਰਿਆਈਆ ਵਾਚੈ ਧਰਮੁ ਹਦੂਰਿ।।*
*ਕਰਮੀ ਆਪੋ ਆਪਣੀ ਕੇ ਨੇੜੈ ਕੇ ਦੂਰਿ।।*
*ਜਿਨੀ ਨਾਮੁ ਧਿਆਇਆ ਗਏ ਮਸਕਤਿ ਘਾਲਿ।।*
*ਨਾਨਕ ਤੇ ਮੁਖ ਉਜਲੇ ਕੇਤੀ ਛੁਟੀ ਨਾਲਿ।।***੧***।।*

## ଶ୍ଲୋକ

*ପୱଣୁ ଗୁରୂ ପାଣୀ ପିତା ମାତା ଧରତି ମହତୁ । ।*
*ଦିୱସୁ ରାତି ଦୁଇ ଦାଇ ଦାଇଆ ଖେଲୈ ସଗଲ ଜଗତୁ । ।*
*ଚଂଗିଆଇଆ ବୁରିଆଇଆ ୱାଚୈ ଧରମୁ ହଦୂରି । ।*
*କରମୀ ଆପୋ ଆପଣୀ କେ ନେଢ଼ୈ କେ ଦୂରି । ।*
*ଜିନୀ ନାମୁ ଧିଆଇଆ ଗଏ ମସକତି ଘାଲି । ।*
*ନାନକ ତେ ମୁଖ ଉଜଲେ କେତୀ ଛୁଟୀ ନାଲି । ।୧ । ।*

**ପବନ ହିଁ ଗୁରୁ ପାଣି ଅଟେ ପିତା ପୂଜନୀୟା ମାତା ଅଟଇ ଧରା ।**
**ଦିବା ରାତ୍ରୀ ଦୁଇ ସେବକ ସେବିକା ଲୀଳା ଖେଳା କରେ ଜଗତ ସାରା । ।**
**ପ୍ରାଣୀଙ୍କର ଭଲ ମନ୍ଦ ଯେତେ ସବୁ ପ୍ରଭୁ ଆଗେ ଧର୍ମ କରେ ବିଚାର ।**
**ଆପଣା ଆପଣା କଲା କର୍ମ ଘେନି କେ ହୁଏ ନିକଟ କେ ହୁଏ ଦୂର । ।**
**ସ୍ମରଣ କରଇ ପ୍ରଭୁ ନାମ ଯିଏ ହୁଅଇ ତାହାର ଶ୍ରମ ସଫଳ ।**
**ମୁକତି ଲଭନ୍ତି କେତେ ତା ସଙ୍ଗତେ 'ନାନକ' ତା ମୁଖ ହୁଏ ଉଜ୍ଜ୍ୱଳ । ।୧ । ।**

((((((---------))))))))

ଲିସ୍‌ଟ ଗୁରୁୱାଣୀ (ଓଡ଼ିଆ ଲିପ୍ୟାଂତରିତ)---

୧)-ଜପୁଜୀ ସାହିବ ଜୀ

୨)-ଆନଂଦ ସାହିବ ଜୀ

୩)-ସୁଖମଣୀ ସାହିବ ଜୀ

୪)-ଆସା ଦୀ ୱାର

୫)-ଜାପୁ ସାହିବ ଜୀ

୬)-ଶବଦ ହଜାରେ

୭)-ରହିରାସ

୮)-ସୋହିଲା

୯)-ସଲୋକ ମ:୯

୧୦)-ବଚିତ୍ର ନାଟକ

୧୧)-ଅକାଲ-ଉସତତି

୧୨)-ଶବଦ-ପା:୧୦

୧୩)-ନିତ୍ତନେମ

୧୪)- ସୁଂଦର ଗୁଟକା ୧୫)-ଅରଦାସ ୧୬)- ଚୌପଈ

**ଶ୍ରୀ ଗୁରୂ ଗ୍ରଂଥ ସାହିବ ଜୀ** ସହ ପ୍ରତ୍ୟେକ ୱାଣୀ

ନିମ୍ନ-ଲିଖିତ ଭାଶାରେ ପୀ-ଡୀ-ଐଫ ଫାଇଲ ଉପଲବ୍ଧ---

୧)-ଓଡ଼ୀଆ, ୨)-ବେଂଗାଲୀ, ୩)-ତେଲେଗୁ,

୪)-କନ୍ନଡ଼, ୫)-ମଲୟାଲମ, ୬)- ଗୁଜରାତୀ

e-mail: - sjsingh2000@yahoo.com



# Sardaar Kirpal Singh 'Dakia'

formerly known as Hari Har Dakua

Well known teacher and connected with Aakaashvani for the last many years. Its his big effort inspite of his illness, he has done a great job and written some of The Holy Baani of Sikh Gurus in Odiya so that the message can be read in local language which was not possible before. Baani is availabe already in english and many international languages but in our local Odiya language , it is the first effort , and a good thing is that the Baani translation is written in verse form. He has translated the first Baani **The "japuji Sahib ji"**, of First Guru "**Sri Guru Nanak Dev ji",** the well known **"Sukhmani Sahib jI"- Baani by the Fifth guru 'Sri Guru Arjun Dev ji",** then he translated **"Shloak mehla 9" - Baani by ninth guru "Sri Guru Tegh Bahadur ji"** and one more **"Anand Sahib ji" – Baani by the third guru " Sri Guru Amardaas ji"**